କବିରାଜ ଜୟଦେବକୃତ

# ଶ୍ରୀ ଗୀତଗୋବିନ୍ଦ





କବିରାଜ ଜୟଦେବକୃତ

# ଶ୍ରୀଗୀତଗୋବିନ୍ଦ

[ ଗଦ୍ୟାନୁବାଦ ଓ ଧରଣୀଧରଙ୍କ ପଦ୍ୟାନୁବାଦ ସହ ]

ସଂପାଦନା : ପଣ୍ଡିତ ନୀଳମଣି ମିଶ୍ର

ଗ୍ରନ୍ଥମନ୍ଦିର

SRI GITAGOVINDA

By Kaviraj Sri Jayadeva,

Edited by : Pandit Neelamani Mishra,

Published by : Manoj Kumar Mahapatro

Grantha Mandir,.Cuttack– 753002,

Printed by : Tapan Kumar Mahapatro,

OPTIMA OFFSET PRINTS, Sutahat, Cuttack-1

First Edition : January, 1995

Reprint : February, 2010

Price : Rs. 80/-

ISBN – 81–7403–005–0

ପ୍ରକାଶକ : ମନୋଜ କୁମାର ମହାପାତ୍ର

ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୭୫୩୦୦୨

ପ୍ରକାଶନ ପରିଚାଳନା : ଅଭିରାମ ମହାପାତ୍ର

ମୁଦ୍ରଣ : ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍,

ସୁତାହାଟ, କଟକ-୧

ପ୍ରଥମ ପ୍ରକାଶନ : ଜାନୁଆରୀ, ୧୯୯୫

ପୁନର୍ମୁଦ୍ରଣ : ଫେବୃଆରି, ୨୦୧୦

ମୂଲ୍ୟ : ଟ. ୮୦/-

# ସୂଚୀ



□□□

# ଆଦ୍ୟକଥନ

ବିଶ୍ୱବିଦିତ ମହାକବି ଜୟଦେବ ଶ୍ରୀଜଗନ୍ନାଥଧାମ ପୁରୀଜିଲ୍ଲାର 'ପ୍ରାଚୀ' ନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ (କେନ୍ଦୁଲୀ) ନାମକ ବ୍ରାହ୍ମଣ-ସଙ୍କୁଳ ଗ୍ରାମରେ ଶ୍ରୀଭୋଜଦେବ ଓ ରାଧାଦେବୀଙ୍କ କୋଳମଣ୍ଡନ କରି ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ସେ କୁଳପରମ୍ପରାକ୍ରମେ ସ୍ମାର୍ତ୍ତ ଥିଲେ ହେଁ, ପରବର୍ତ୍ତୀ ସମୟରେ ବୈଷ୍ଣବୀ-ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ରାଧାମାଧବଙ୍କ ସମ୍ମିଳିତ ବିଗ୍ରହରୂପେ ଆରାଧନା କରିବା ସଙ୍ଗେ ସଙ୍ଗେ, 'ଶ୍ରୀଗୀତଗୋବିନ୍ଦ' ଶୀର୍ଷକ ଅନବଦ୍ୟ କାବ୍ୟମାଳିକା ପ୍ରଣୟନ କରି ତାଙ୍କରି ଚରଣାରବିନ୍ଦରେ ଅର୍ପଣ କରିଥିଲେ ।

ଶ୍ରୀଜୟଦେବ, 'ଗୀତଗୋବିନ୍ଦ'ରେ ପିତା, ମାତା, ବନ୍ଧୁ ପରାଶର, ପତ୍ନୀ ପଦ୍ମାବତୀ ଓ ବାସସ୍ଥାନ 'କେନ୍ଦୁବିଲ୍ୱ' ବ୍ୟତୀତ ତାଙ୍କ ସମ୍ବନ୍ଧରେ ଜାଣିବାପାଇଁ ଆଉ କୌଣସି ତଥ୍ୟ ଦେଇନାହାନ୍ତି । ତାଙ୍କ ସମ୍ବନ୍ଧରେ ସମସ୍ତ ତଥ୍ୟ ଜାଣିବାପାଇଁ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଦ୍ୱାନ୍ ଗତ ଶତାବ୍ଦୀରୁ ଚେଷ୍ଟା ଚଳାଇ ଆସୁଛନ୍ତି ।

ଓଡ଼ିଶାରେ ଶ୍ରୀଗୀତଗୋବିନ୍ଦ ଓ ଶ୍ରୀଜୟଦେବଙ୍କ ସମ୍ବନ୍ଧରେ ଗବେଷଣାମୂଳକ ତଥ୍ୟ ପରିବେଷଣ ଦିଗରେ ବହୁ ବିଦ୍ୱାନ୍ ଚେଷ୍ଟା ଚଳାଇଥିଲେ ହେଁ, ଐତିହାସିକ, ପ୍ରତ୍ନତତ୍ତ୍ୱବିଦ୍ ଓ ସାହିତ୍ୟ ସମାଲୋଚକ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ପ୍ରଚେଷ୍ଟା ବାସ୍ତବିକ ପ୍ରଶଂସନୀୟ ତଥା ପ୍ରାମାଣିକ ତଥ୍ୟ ଉପରେ ଆଧାରିତ । ସେ ଗୀତଗୋବିନ୍ଦକାର ଶ୍ରୀଜୟଦେବଙ୍କ ସମ୍ବନ୍ଧରେ ଓଡ଼ିଆ ଓ ଇଂରାଜୀରେ ବହୁ ଗବେଷଣାମୂଳକ ପ୍ରବନ୍ଧ ଲେଖିଥିଲେ ହେଁ, ତାଙ୍କ ପ୍ରଣୀତ ପୁସ୍ତକ 'ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ' ଖଣ୍ଡିଏ ପ୍ରାମାଣିକ ତଥା ବହୁ ତଥ୍ୟ ଉପରେ ଆଧାରିତ ଗ୍ରନ୍ଥ । ସେଥିରେ ସ୍ୱର୍ଗତ ମହାପାତ୍ର ଆଲୋଚ଼ନା କରି ଜୟଦେବଙ୍କ ଜନ୍ମ, ବାସସ୍ଥାନ ଓ ସମୟ ବିଷୟରେ ଯେଉଁ ମତ ପୋଷଣକରନ୍ତି, ତା' ଅପେକ୍ଷା ଅଧିକ ତଥ୍ୟ ସଂଗ୍ରହ କରିବା ଏକାନ୍ତ ଅସମ୍ଭବ । ସ୍ୱର୍ଗତ ମହାପାତ୍ର ଜୀବନବ୍ୟାପି ଯେଉଁ ସାଧନା କରିଥିଲେ, 'ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ' ହେଉଛି ତା'ରି ନିର୍ଯ୍ୟାସ । ସ୍ୱର୍ଗତ କେଦାରନାଥଙ୍କ ପଦାଙ୍କ ଅନୁସରଣ କରି ଉତ୍କଳୀୟ କବି ଜୟଦେବଙ୍କ ସମ୍ବନ୍ଧରେ କିଛି ଆଲୋଚ଼ନା କରିବା ପ୍ରସ୍ତୁତ 'ଆଦ୍ୟକଥନ'ର ଏକମାତ୍ର ଧ୍ୟେୟ ।

ଜୟଦେବ ଉତ୍କଳଭୂମିରେ ଜାତହୋଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ନିଯୁକ୍ତ ନିଥିବାର ପ୍ରଥମ ପ୍ରାମାଣିକ ପୁସ୍ତକ ହେଉଛି – 'ବୈଷ୍ଣବ ଲୀଳାମୃତ' । ଶ୍ରୀ ଚୈତନ୍ୟମହାପ୍ରଭୁଙ୍କ ସମସାମୟିକ ତଥା ଏକାନ୍ତ ଭକ୍ତ ମାଧବ ପଟ୍ଟନାୟକ ତାଙ୍କ ପୁସ୍ତକ 'ବୈଷ୍ଣବ ଲୀଳାମୃତ' ରେ ଶ୍ରୀଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି –

''ଏଥୁ ଅନ୍ତରେ ଶୁଣ ଜନେ । ଗୀତଗୋବିନ୍ଦ ପରିମାଣେ ।।
ବିପ୍ର ସେ ଜୟଦେବ ନାମ । କ୍ଷେତ୍ରବରକୁ ଆଗମନ ।।
କେନ୍ଦୁଳୀ ଶାସନ ତା' ଗ୍ରାମ । ପ୍ରାଚୀନଦୀର ତଟ ପୁଣ ।।
ନିଆଳି ମାଧବ ସମୀପେ । ଉଗତି କଲ ନାନା ରୂପେ ।।
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱମାର୍ଗେ ତା'ର ମନ ।।
ଗୀତ ସେ ରଚିବି ବୋଇଲା । କ୍ଷେତ୍ରବାସକୁ ମନ ଦେଲା ।।
ଶ୍ରୀଜଗନ୍ନାଥର ସମୀପେ । ଶୁଦ୍ଧସାତ୍ତ୍ୱିକ ମତି ଭାବେ ।।
ରଚିଲା ଶ୍ରୀଗୀତଗୋବିନ୍ଦ । ଲଭିଲା ପରମଆନନ୍ଦ ।।
ଶ୍ରୀରାଧାମାଧବର ଲୀଳା । ମଧୁର ସ୍ୱରରେ ଗାଇଲା ।।
ପତ୍ନୀ ତାହାର ପଦ୍ମାବତୀ । ଗୀତର ତାଳେ ସେ ନୃତ୍ୟତି ।।
ରାହାସ ନୃତ୍ୟ କଲା ଜାଣି । ନାଟ ସେ କଲାକ ନାଚୁଣୀ ।।
ଭଗତେ ଧନ୍ୟ ଧନ୍ୟ କଲେ । ଭଗତିଭାବେ ଭୋଳ ହେଲେ ।।
ଗୀତଗୋବିନ୍ଦ ନାଟ ସେବା । ମନ୍ଦିରେ ପ୍ରତ୍ୟହ ହୋଇବା ।।
ରାଜା ସେ ସେବା ଭିଆଇଲା । କେନ୍ଦୁଳୀ ଶାଢ଼ୀ ଯୋଗାଇଲା ।।

(ବୈଷ୍ଣବଲୀଳାମୃତ – ଦ୍ୱିତୀୟ ଅଧ୍ୟାୟ)

ଖ୍ରୀଷ୍ଟୀୟ ୧୫୬୩ ସାଲରେ ମୈଥିଳ ପଣ୍ଡିତ କେଶବ ମିଶ୍ରଙ୍କ ରଚିତ 'ଅଳଙ୍କାରଶେଖର' ପୁସ୍ତକରେ ଆଚାର୍ଯ୍ୟ ଗୋବର୍ଦ୍ଧନ୍‌ଙ୍କର ଗୋଟିଏ ଶ୍ଳୋକ ଉଦ୍ଧାର କରାଯାଇଛି । ସେହି ଶ୍ଳୋକରୁ ଜଣାଯାଏ ଯେ, କବିରାଜ ଜୟଦେବ ଉତ୍କଳ ରାଜଦରବାରରେ ଜନୈକ ପ୍ରଖ୍ୟାତ ପଣ୍ଡିତ ଥିଲେ –

''ପ୍ରାକ୍ ପ୍ରତ୍ୟକ୍ ପୃଥିବୀଭୃ ପରିଷଦି ପ୍ରଖ୍ୟାତସଂଖ୍ୟାବତା –
ମହ୍ନାୟାଦ୍‌ଭୁତତର୍କକର୍କଶତୟା ବିଚ୍ଛିଦ୍ୟ ବିଦ୍ୟାମଦମ୍ ।
ଯେକେଽପ୍ୟୁତ୍କଳଭୂପତେ ତବ ସଭା ସମ୍ଭାବିତାଃ ପଣ୍ଡିତାଃ
ପତ୍ରଂ ଶ୍ରୀଜୟଦେବ ପଣ୍ଡିତ କବିସ୍ତନ୍ମୂର୍ଦ୍ଧ୍ନି ବିନ୍ୟସ୍ୟତି ।।

କେଶବ ମିଶ୍ରଙ୍କ ସମସାମୟିକ ମୈଥିଳ ବିଦ୍ୱାନ୍ ଚନ୍ଦ୍ରଦତ୍ତ ତାଙ୍କ 'ଭକ୍ତମାଳା' ପୁସ୍ତକରେ ଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି –

''ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ ।
କିନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମେ ବ୍ରାହ୍ମଣସଙ୍କୁଳଃ ।।
ତତ୍ରୋତ୍କଳେ ଦ୍ୱିଜୋ ଜାଣେ ଜୟଦେବ ଇତି ଶ୍ରୁତଃ ।
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ ।।

×    ×    ×

ନିର୍ମାୟ ଗୀତଗୋବିନ୍ଦଂ ପୁସ୍ତକଂ ପୁରୁଷୋତ୍ତମେ
ନିବେଦ୍ୟ କୃତକୃତ୍ୟୋଽଭୂଦ୍ ଜୟଦେବ ମହାମନାଃ ।''

ଖ୍ରୀଷ୍ଟାବ୍ଦ ୧୭୧୨ ସାଲରେ ଲିଖିତ ପ୍ରିୟାଦାସଙ୍କ ଭକ୍ତମାଳଟୀକାରେ ଶ୍ରୀଜୟଦେବ ଓ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧ ସମ୍ପର୍କରେ ଉଲ୍ଲେଖ ରହିଛି –

''କିନ୍ଦୁବିଲ୍ୱଗ୍ରାମ ତାମୈଂ ଭୟେ କବିରାଜରାଜ,
ଭଖ୍ୟୋ ରସରାଜ ହିୟେ ମନ ମନ ଚାଖିୟେ ।
ଦିନ୍ ଦିନ୍ ପ୍ରତି ରୁଖ୍ ରୁଖ୍ ତରଜାଇଂ ରହେଂ,
ଗହେଂ ଏକ ଗୁଦରୀ କମଣ୍ଡଳକୋ ରାଖିୟେ ।
କହି ଦେବୈ ବିପ୍ରସୁତା ଜଗନ୍ନାଥ ଦେବଜୂକୋଂ,
ଭୟୋ ଜଗ ସମୈ ଚଲ୍ୟୋ ଜୈନ ପ୍ରଭୁଭାଖିୟେ ।
ରସିକ ଜୈଦେବ ନାମ ମେରାଇ ସ୍ୱରୂପ,
ତାହି ଦେବୈ ତତକାଲ ଅହୋ ମେରୀ କହି ସାଖିୟେ ।''

ମହାରାଷ୍ଟ୍ରର ଭକ୍ତକବି ମହୀପତି ଖ୍ରୀ: ଅ: ୧୭୬୨ ସାଲରେ 'ଭକ୍ତବିଜୟ' ଶୀର୍ଷକ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ସେ ଉତ୍କଳୀୟ କବି ଜୟଦେବଙ୍କ ଜନ୍ମ ଓ ବାସସ୍ଥାନ ସମ୍ବନ୍ଧରେ ଲେଖିଛନ୍ତି –

''ଜଗନ୍ନାଥକ୍ଷେତ୍ର ସମୀପ ଜାଣ । କେନ୍ଦୁବିଲ୍ୱ ନାମ ଗ୍ରାମାଭିଧାନ ।
ବ୍ରାହ୍ମଣବଂଶୀ ଅବତାର ପୂର୍ଣ୍ଣ । ତେଥେଂ ଘେତଲା ଶ୍ରୀବ୍ୟାସେ ।
ତୋନି ଜୟଦେବ କବିନେଂକବୀନ । ଶ୍ରୀଗୀତଗୋବିନ୍ଦ କୈଲା ।''

କୃଷ୍ଣଦାସ କବିରାଜଙ୍କ ନାମରେ ଭଣିତ 'ଶ୍ରୀଶ୍ରୀଭକ୍ତମାଳା' ପୁସ୍ତକରେ ଅନେକ ଅବାନ୍ତର ତଥ୍ୟ ରହିଥିଲେ ହେଁ, ଶ୍ରୀଜୟଦେବ ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ରହିଛି –

''ଜୟଦେବ ମହାଶୟ ମହାନ୍ ମାନୁଷ । ଶ୍ରୀପୁରୁଷୋତ୍ତମକ୍ଷେତ୍ରେ ବୃକ୍ଷତଳେ ବାସ ।
ଅଗାଧ ପାଣ୍ଡିତ୍ୟହୟ ଅତୁଲ ଭକ୍ତିମାନ । ଶ୍ରୀଜଗନ୍ନାଥ ପ୍ରଭୁର କୃପାର ଭାଜନ ।''

× × ×

ଝୋଁପଡ଼ା ବାନ୍ଧିୟା ଏକ ସେବା ପ୍ରକାଶିଲା ।
ଶ୍ରୀରାଧାମାଧବ ନାମ ଠାକୁରେର ହୈଲ ।
ତାର ପରିଚର୍ଯ୍ୟାୟ ପଦ୍ମାରେ ନିୟୋଜିଲା ।''

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରସିଦ୍ଧ ଉତ୍କଳୀୟ ଭକ୍ତକବି ରାମଦାସ ସ୍ୱରଚିତ 'ଦାର୍ଢ୍ୟତାଭକ୍ତିରସାମୃତ' ରେ ଲେଖିଛନ୍ତି –

''ଜନମ କେନ୍ଦୁବିଲ୍ୱ ଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ ।।
ମହାପଣ୍ଡିତ ବିଷ୍ଣୁଭକ୍ତ । ଜିତଇନ୍ଦ୍ରିୟ ସୁବିନୀତ ।।
ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପରବେଶ ଆସି ।।

ଏକ ବୃକ୍ଷର ତଳେଥାଇ । ଶ୍ରୀଜଗନ୍ନାଥଙ୍କୁ ସେବଇ ॥
ରଚିଲା ଅପୂର୍ବ ପ୍ରବନ୍ଧ । ନାମ ଯା ଶ୍ରୀଗୀତଗୋବିନ୍ଦ ॥
ଶୁଣନ୍ତି ଆଜ ଯାଏ ନିତ୍ୟ । ତ୍ରିକାଳେ ଯାହା ଜଗନ୍ନାଥ ॥

ପ୍ରାଚୀନ କାଳର ପଣ୍ଡିତ ଓ ଭକ୍ତକବିଙ୍କ ବିବରଣୀ ବ୍ୟତୀତ ଶ୍ରୀଜୟଦେବ କଳିଙ୍ଗ ବା ଉତ୍କଳରେ ଜନ୍ମଗ୍ରହଣ କରିଥିଲେ ବୋଲି ଊନବିଂଶ ଓ ବିଂଶ ଶତାବ୍ଦୀର ଯେଉଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଦ୍ୱାନ୍‌ମାନେ ମତ ଦିଅନ୍ତି, ତନ୍ମଧ୍ୟରେ 'ସାର୍ ଉଇଲିୟମ୍ ଜୋନ୍‌ସ୍'ଙ୍କ ମତ ଏଠାରେ ଉଲ୍ଲେଖ କରାଯାଇପାରେ –

"The Loves of Krishna and Radha... are the subject of this little pestoral drama entitled Gitagovinda. It was the work of Jayadeva... who borns he tells himself in Kenduli which many believe to be in KALINGA."

ଖ୍ରୀ: ଅ: ୧୮୬୫ ସାଲରେ ପ୍ରକାଶିତ ମହାରାଷ୍ଟ୍ରୀୟ ଆଲୋଚକ ହରିଦାସ ହୀରାଚାନ୍ଦଙ୍କ ସମ୍ପାଦିତ 'ଗୀତଗୋବିନ୍ଦ'ର ମୁଖବନ୍ଧରେ ରହିଛି – "In northern Hindusthan, near Jagannath, there lived in a village named Kenduvilva, Bhojadeva a Brahmin of Kanvakubja, he had a wife named Radha from whom Jayadev the king of poet took birth."

'ଶେଖ୍ ଶୁଭୋଦୟ' ଶୀର୍ଷକ ଖଣ୍ଡିଏ ପୁସ୍ତକର ସମ୍ପାଦନା କରି ପ୍ରଖ୍ୟାତ ବଙ୍ଗୀୟ ଆଲୋକଚ଼କ ଡକ୍ଟର ସୁକୁମାର ସେନ୍ ଲେଖିଛନ୍ତି – "It indicates that Jayadeva did not originally belongs to the Court of Lakshmana Sena and that he had first came there as an outsider."

ଡକ୍ଟର ସେନ୍ 'ବାଙ୍ଗଲା ସାହିତ୍ୟେର ଇତିହାସ' ରେ ଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି – ''xxx ଉଡ଼ିଷ୍ୟାୟ ପୁରୀର ଅନତିଦୂରେ ପ୍ରାଚୀନଦୀର ଧାରେ କେନ୍ଦୁବିଲ୍ୱଗ୍ରାମ ଆଛେ । xxx ମନେ ହଇତେ ପାରେ ଯେ, ଗୀତଗୋବିନ୍ଦର ଗାନ ଆଦିରସ ଉଡ଼ିଷ୍ୟାର ମନ୍ଦିରେର୍ ଏକ ଧରଣେର ସ୍ଥାପତ୍ୟ ଶିଳ୍ପେର ପ୍ରତିଫଳନ । ସୁତରାଂ ଜୟଦେବ ଉଡ଼ିଷ୍ୟା ନିବାସୀଇ ହଇବେନ୍'' ।

ପ୍ରସିଦ୍ଧ ବଙ୍ଗୀୟ ଗବେଷକ ଡକ୍ଟର୍ ଆଶୁତୋଷ ଭଟ୍ଟାଚାର୍ଯ୍ୟ ୧୯୬୯ ଅପ୍ରେଲ୍ ୧୪ ତାରିଖରେ ଅନୁଷ୍ଠିତ କଟକର 'ବିଷୁବମିଳନ' ରେ ଭାଷଣଦେଇ କହିଥିଲେ –''ମୁଁ ଏଠାକୁ ଆସି ଆପଣମାନଙ୍କ ସମ୍ମୁଖରେ ଭାଷଣ ଦେଉଛି ବୋଲି ଏହା କହୁନାହିଁ । ଜଣେ ଗବେଷକ ହିସାବରେ ମୁଁ ଦୃଢ଼ତାର ସହିତ କହୁଛି ଯେ, ଜୟଦେବଙ୍କ ଜନ୍ମ ଓଡ଼ିଶାରେ.... । (ପ୍ରଜାତନ୍ତ୍ର – ୧୫ । ୪ । ୬୯)

ଡକ୍ଟର ଭଟ୍ଟାଚାର୍ଯ୍ୟ ବଙ୍ଗଳା ସାପ୍ତାହିକ 'ଯୁଗବାଣୀ' ଜୁନ୍ ୭ । ୬୯ ସଂଖ୍ୟାରେ ଗୋଟିଏ ପ୍ରବନ୍ଧରେ ଲେଖିଥିଲେ– ଜୟଦେବ ଛିଲେନ୍ ଉଡ଼ିୟା ଏବଂ ବୀରଭୂମେର

କେନ୍ଦୁଲୀଠେ ଅନୁଷ୍ଠିତ ବାତ୍ସରିକ ମେଳା ଆସଲେ ବାଉଲ୍ ମେଳା ଏବଂ ଜୟଦେବର ଜନ୍ମେର ସଙ୍ଗେ ଏର୍‌କୋନ ସମ୍ପର୍କ ନେଇ ।''

ହିନ୍ଦୀଜଗତର ପ୍ରସିଦ୍ଧ ଆଲୋଚକ ଡକ୍‌ଟର ପରଶୁରାମ ଚତୁର୍ବେଦୀ 'ଉତ୍ତର ଭାରତକୀ ସନ୍ଥ ପରମ୍ପରା' ଶୀର୍ଷକ ପୁସ୍ତକରେ ଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି – ''ଜୟଦେବ୍‌କା ଜନ୍ମସ୍ଥାନ ୱାସ୍ତବ୍ ମେଁ କେନ୍ଦୁଲୀ ଶାସନ ଗାଁଓ ମେଁ ହୈ, ଜୋ ଉଡ଼ୀସା ପ୍ରାନ୍ତ ମେଁ ପୁରୀକେ ନିକଟ୍ କିସୀ ପ୍ରାଚୀ ନଦୀପର୍ ଅବସ୍ଥିତ ହୈ । ଇନ୍‌କେ ଉଡ଼ିୟା ହୋନେ କା ପ୍ରମାଣ ଇସ୍‌ବାତ୍ ସେ ଭୀ ଦିଖ୍‌ଲାୟା ଜାତା ହୈ କି, ଓହାଁ କେ ଲୋଗ୍ ଇସ୍ କବି ସେ ଅଧିକ୍ ପରିଚିତ୍ ଜାନ୍ ପଡ଼ତେ ହୈଂ । xxx ଉଡୀସା ପ୍ରାନ୍ତ ବୈଷ୍ଣବ ସମ୍ପ୍ରଦାୟ କୀ ଭାଁତି ବୌଦ୍ଧୋଁ କେ ବଜ୍ରୟାନ ଏବଂ ସହଜୟାନ୍ ସମ୍ପ୍ରଦାୟୋଁ କା ଭୀ ଏକ ପ୍ରସିଦ୍ଧ କେନ୍ଦ୍ର ରହ୍‌ଚୁକା ହୈ, ଔର ଜୟଦେବ କୋ ସହଜ୍‌ୟାନ୍ ସମ୍ପ୍ରଦାୟଦ୍ୱାରା ପ୍ରଭାବିତ ଭୀ କହତେ ହୈଂ । ଅତଏବ ସମ୍ଭବ ହୈ କି ଜୟଦେବ ଉଡ଼ିସା ପ୍ରାନ୍ତ କେ ମୂଲ୍ ନିବାସୀ ହୋଁ.... ।''

'ସଂସ୍କୃତ ସାହିତ୍ୟ ଇତିହାସ'ର ପ୍ରଣେତା ଡି. ଭି. ବରଦାଚାରୀ ଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି – "He (Jayadeva) is the author of a lyric Gitagovinda in twelve cantos. He was born in Kenduvilva a place in Orissa."

ସୁଖ୍ୟାତ ଗବେଷକ ଡକ୍ଟର୍ ଭି. ରାଘବନ୍ କହନ୍ତି –

''କୋ ବା ଭକ୍ତଃ ଏତଦ୍ଦେଶପ୍ରତିଷ୍ଠିତଂ ଜଗନ୍ନାଥଂ ନ ପଶ୍ୟତି ।
କୋ ବା ସାହିତ୍ୟିକଃ ଏତଦ୍ଦେଶପ୍ରସୂତଂ ସାହିତ୍ୟଦର୍ପଣଂ ନାଧୀତେ ।
କୋ ବା ଗାୟକଃ ଏତଦ୍ଦେଶପ୍ରସୂତଂ ଗୀତଗୋବିନ୍ଦଂ ନ ଗାୟତି ।।''

୧୯୭୦, ନଭେମ୍ବର ୧୩ ତାରିଖ ''ଯୁଗାନ୍ତର'' (ବଙ୍ଗଳା) ପତ୍ରିକାରେ ପ୍ରକାଶ ପାଇଥିଲା । ''କଟକ, ୧୨ ନଭେମ୍ବର – ତ୍ରୟୋଦଶ ଶତାବ୍ଦୀର ସଂସ୍କୃତ କବି ଜୟଦେବେର୍ ଜନ୍ମସ୍ଥାନ ଠିକ୍ କୋଥାୟ ଛିଲ, ତା' ନିୟେ ତୀବ୍ର ମତଦ୍ୱୈଧତା ଆଛେ । ସମ୍ପ୍ରତି ଉଡ଼ିଷ୍ୟାର ଏକଜନ ସଂସ୍କୃତ ପଣ୍ଡିତ ଡକ୍ଟର ସାବିତ୍ରୀ ରାଉତ ଏଇ ବିଷୟେ ନତୁନ୍ ଆଲୋକପାତ କରେଛେନ୍ । . . . . ଡକ୍ଟର ରାଉତ ଅକ୍ଟୋବର ମାସେର୍ ଦ୍ୱିତୀୟ ସପ୍ତାହେ ଅକ୍‌ସ୍‌ଫୋର୍ଡସ୍ଥିତ ଓରିୟେଣ୍ଟାଲ୍ ଇନ୍‌ଷ୍ଟିଚ୍ୟୁଟେର ଡିରେକ୍‌ଟର୍ ଅଧ୍ୟାପକ ଟି. ବରୋର ସଙ୍ଗେ କାଜ୍ କରେନ୍ । ସେଖାନେ ବୋଡ୍‌ଲିନ୍ ଗ୍ରନ୍ଥାଗାରେର୍ ଏକଟି ପୁଁଥିକେ ଦେଖ୍‌ତେ ପାନ୍ ଯେ, ସଂସ୍କୃତକବି ଜୟଦେବେର୍ ଜନ୍ମ ହୟେଛିଲ ଉତ୍କଲେ । ଉକ୍ତ ପୁଁଥିଟି ୧୭୯୪ ସାଲେର୍ । ଡକ୍ଟର୍ ରାଉତ ବଲେନ୍ ଐ ପୁଁଥିତେ ଲେଖା ଛିଲ – 'ଉତ୍କଲୀୟେନ ଜୟଦେବେନ' ଅର୍ଥାତ୍ କବି ଜୟଦେବେର୍ ଜନ୍ମ ଉତ୍କଲେ ।''

ପ୍ରସିଦ୍ଧ କବି ଶିବନାରାୟଣ ତୀର୍ଥଙ୍କ ପ୍ରଣୀତ 'ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ' ପୁସ୍ତକର ସମ୍ପାଦକ ନୋରି ନରସିଂହ ଶାସ୍ତ୍ରୀ ଜୟଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି –

"We have then a record of his visit to Puri Jagannath. This Kshetra seems to have impressed him most. During his stay there he used to be constantly remind of Jayadeva."

ସ୍ୱନାମଧନ୍ୟ ଥମାସ୍ ଡୋନାଲ୍‌ସନ୍ ଲେଖିଛନ୍ତି – "Many scholars identify this Kenduvilva with a site of the Ajaya River in the Birbhum district of Bengal. More convincing however, are arguments of Orissan scholars, such as K. Mahapatra and B. Rath who identify it with the village of Kenduli in the Puri district of Orissa, between the Prachi and Kushabhadra river and close to Prataprudrapur Shasan.... It is also noteworthy that all of the musical notes (Ragas) used in the Gitagovinda are fully utilised with greater dimension by the old Oriya writers, these ragas are rarely met with in the old Bengali literature."

ପ୍ରସିଦ୍ଧ ଗବେଷିକା ଡକ୍ଟର କପିଳା ବାତ୍ସ୍ୟାୟନ କହନ୍ତି – "There is no gainsaying that Orissa is the reachest repository of the tradition of the Gitagovinda in the literary, pictorial and performing arts alike."

ଶ୍ରୀ ଜୟଦେବଙ୍କ ସମ୍ବନ୍ଧରେ ପ୍ରାଚୀନ କାଳରୁ ଆରମ୍ଭ କରି ଆଧୁନିକ କାଳର ସମାଲୋଚକମାନଙ୍କ ସୁସ୍ପଷ୍ଟ ମତ ଥିବା ସତ୍ତ୍ୱେ ଜଣେଅଧେ ତଥାକଥିତ ଆଲୋଚକ ଭିନ୍ନ ମତପୋଷଣ କରିଲାଗିଛନ୍ତି । ଏଥିରୁ ମନେହୁଏ – ଗୀତଗୋବିନ୍ଦକାର ଜୟଦେବଙ୍କ ସମ୍ବନ୍ଧରେ ଯେଉଁ ଆଲୋଚନାମାନ କରାଯାଇଛି ତାହା କବିଙ୍କର ବାସସ୍ଥାନ ଓ କର୍ମଭୂମି ଓଡ଼ିଶା ସମ୍ପର୍କରେ ଯଥେଷ୍ଟ ।

ଓଡ଼ିଆ ଅନୁବାଦ ସହିତ କେତେଖଣ୍ଡି ଜୟଦେବଙ୍କ ଗୀତଗୋବିନ୍ଦ ବିଭିନ୍ନ ପ୍ରକାଶକଙ୍କ ଦ୍ୱାରା ପ୍ରକାଶ ପାଇଛି । ବିଶେଷତଃ ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟ ବଚ୍ଚଗୀଦାସ ଓ ଜଗନ୍ନାଥ ମିଶ୍ରଙ୍କ ଅନୁବାଦ ସହିତ ଗୀତଗୋବିନ୍ଦ ପାଠକ ପାଠିକାଙ୍କ ହସ୍ତଗତ ହୋଇଛି । ସେ ଅନୁବାଦଗୁଡ଼ିକ ସେତେ ପ୍ରାଞ୍ଜଳ ଓ ସୁସ୍ପଷ୍ଟ ହୋଇନଥିବାରୁ ପ୍ରସ୍ତୁତ ପୁସ୍ତକରେ କେବଳ 'ଗୀତଗୋବିନ୍ଦ'ର ଉତ୍କଳୀୟ ପାଠ, ବିଶେଷତଃ ଡକ୍ଟର୍ ଭଗବାନ ପଣ୍ଡାଙ୍କ ସମ୍ପାଦନାରେ ପ୍ରକାଶିତ ତଥା 'ସର୍ବାଙ୍ଗସୁନ୍ଦରୀ' ଓ 'ଶ୍ରୁତିରଞ୍ଜିନୀ' ଟୀକା ସମନ୍ୱିତ ମୂଳ ପାଠକୁ ଗ୍ରହଣ କରାଯାଇଛି । ଏଥିରେ ପ୍ରଦତ୍ତ ଗଦ୍ୟାନୁବାଦ ମୁଖ୍ୟତଃ 'ରସମଞ୍ଜରୀ', 'ରସିକପ୍ରିୟା', 'ସର୍ବାଙ୍ଗସୁନ୍ଦରୀ' ଓ 'ଶ୍ରୁତିରଞ୍ଜିନୀ'ର ବ୍ୟାଖ୍ୟା ଉପରେ ଆଧାରିତ । ଏତଦ୍‌ବ୍ୟତୀତ ଧରଣୀଧରଙ୍କ ପଦ୍ୟାନୁବାଦର ଯେତିକି ଅଂଶ ମୂଳ ଶ୍ଳୋକ ସହିତ ସଂଶ୍ଳିଷ୍ଟ, ମାତ୍ର ସେତିକି ପାଠ ଏଥିରେ ଗୃହୀତ ହୋଇଛି । ଧରଣୀଧରଙ୍କ ଅନୁବାଦରେ ଯେଉଁ ଶ୍ଳୋକର ଅନୁବାଦ ନାହିଁ ଏବଂ ଯେଉଁ ଯେଉଁ ସ୍ଥଳରେ ଅନୁବାଦ ଆଦୌ ସୁସ୍ପଷ୍ଟ ନୁହେଁ, ସେପରି କେତେକ ସ୍ଥଳରେ ନୂତନ ପଦ ସନ୍ନିବେଶିତ ହୋଇଛି । 'ଗୀତଗୋବିନ୍ଦ'ର ବିଭିନ୍ନ ସଂସ୍କରଣରେ ଗାଥାଗୁଡ଼ିକର 'ରାଗ' ସହିତ ତାଳ ନିର୍ଦ୍ଦେଶ କରାଯାଇଛି । କିନ୍ତୁ ଉତ୍କଳୀୟ ଟୀକାକାରଙ୍କ

ସନ୍ନିବେଶିତ ପାଠରେ 'ତାଳ' ନିର୍ଦ୍ଦେଶ ନଥିବାରୁ, ପ୍ରସ୍ତୁତ ସଂସ୍କରଣରେ ତାଳଗୁଡ଼ିକର ନାମ ସେହି ସେହି ସ୍ଥାନରେ ଦିଆଯାଇଛି ।

'ଗୀତଗୋବିନ୍ଦ'ର ପ୍ରଖ୍ୟାତି ବିଶ୍ୱବ୍ୟାପୀ ଲୋକପ୍ରିୟତା ଅର୍ଜନ କରୁଛି – ଏହା ଅତ୍ୟନ୍ତ ଆନନ୍ଦର ବିଷୟ । ଓଡ଼ିଶାରେ ଗୀତଗୋବିନ୍ଦର ଯେତେ ଅନୁକୃତି, ଟୀକା ଓ ଅନୁବାଦ ରହିଛି, ତାହା ଅନ୍ୟ କୁତ୍ରାପି ପରିଲକ୍ଷିତ ହୁଏନାହିଁ । କେବଳ ଶ୍ରୀମନ୍ଦିରରେ ଯେ 'ଗୀତଗୋବିନ୍ଦ' ଅନ୍ୟତମ ସେବା ରୂପେ ଗୃହୀତ ହୋଇଛି ତା'ନୁହେଁ, ଓଡ଼ିଶାର ପ୍ରାୟ ସର୍ବତ୍ର ମନ୍ଦିରମାନଙ୍କରେ 'ଗୀତଗୋବିନ୍ଦ' ପାଠର ବ୍ୟବସ୍ଥା ପ୍ରାଚୀନ କାଳରୁ ଚଳିଆସୁଛି । ଏହି ପରିପ୍ରେକ୍ଷୀରେ ପ୍ରାଞ୍ଜଳ ଗଦ୍ୟ ଓ ପଦ୍ୟାନୁବାଦ ସହିତ ଖଣ୍ଡିଏ 'ଗୀତଗୋବିନ୍ଦ' ପୁସ୍ତକ ପ୍ରକାଶ କରିବା ନିମିତ୍ତ, ଓଡ଼ିଶାର ପ୍ରଖ୍ୟାତ ପ୍ରକାଶକ 'ଗ୍ରନ୍ଥମନ୍ଦିର'ର ପ୍ରତିଷ୍ଠାତା ସ୍ୱର୍ଗତ ଶ୍ରୀଧର ମହାପାତ୍ର ଇଚ୍ଛା କରିଥିଲେ । ତାଙ୍କର ସେହି ଅପୂରଣୀୟ ଇଚ୍ଛାକୁ ସାକାର କରିବା ପାଇଁ ସ୍ୱର୍ଗତ ଶ୍ରୀଧରବାବୁଙ୍କ ସୁପୁତ୍ର ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ଅତ୍ୟନ୍ତ ଆଗ୍ରହୀ ହୋଇ, ପୁସ୍ତକଟିର ସମ୍ପାଦନା ଦାୟିତ୍ୱ ମୋ' ଉପରେ ନ୍ୟସ୍ତ କରିଛନ୍ତି । ସେଥିପାଇଁ ମୁଁ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ବନ୍ଧୁ ଡକ୍‌ଟର୍ ଭଗବାନ ପଣ୍ଡା ପ୍ରସ୍ତୁତ ପୁସ୍ତକ ସମ୍ପାଦନାରେ ବହୁ ସାହାଯ୍ୟ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି । ଓଡ଼ିଶାର ଅଗଣିତ ପାଠକ ପାଠିକା ମୋ' ଲେଖାଗୁଡ଼ିକ ପାଠକରି ମୋତେ ସର୍ବଦା ଉତ୍ସାହିତ କରିଛନ୍ତି । ସେହିମାନଙ୍କ ଉତ୍ସାହ ହିଁ ମୋତେ ବହୁଭାବରେ ଉତ୍ସାହିତ କରିଛି । ତେଣୁ ଓଡ଼ିଶାର ବିଦଗ୍ଧ ପାଠକ ପାଠିକାମାନଙ୍କଠାରେ ମୁଁ ମୋର ବିନମ୍ର କୃତଜ୍ଞତା ଜଣାଉଛି । ପୁସ୍ତକଟି ସେହିମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ଜୟଜଗଦୀଶହରେ . . . .

କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର — ବିନୀତ
ଶ୍ରୀଗୁଣ୍ଡିଚା – ୧୯୯୪ — ନୀଳମଣି ମିଶ୍ର

# ଶ୍ରୀ ଗୀ ତ ଗୋ ବି ନ୍ଦ

## ପ୍ରଥମସର୍ଗ

ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ –
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ-କେଳୟଃ । ୧ ।

ଧରଣୀଧରଙ୍କ ପଦ୍ୟାନୁବାଦ –

ମାୟା ରଚିଲେ ଦେବ ମାୟାଧର, ମେଘ ଆସି ଆଚ୍ଛାଦିଲା ଅମ୍ବର ।
ନିବିଡ଼ ନୀଳମେଘ ପ୍ରକାଶିଲା । ବିପିନଗିରି ଶ୍ୟାମଳ ଦିଶିଲା ।
ନୀଳତମାଳତରୁ ଘନଲତା । ଦେଖିଣ ନନ୍ଦ ପାଇଲେକ ଚିନ୍ତା ।
ରାଧାକୁ ବୋଲନ୍ତି ବରଜପତି । ଗୋଡ଼ାଇ ଅଇଲା ତ ଏ' ଶ୍ରୀପତି ।
ନିଶାରେ ଗୋଗୋଷ୍ଠେ କରିବ ଭୟ । ଗୃହେ ପ୍ରବେଶ କରାଅ ତନୟ ।
ଏମନ୍ତ ନନ୍ଦର ଆଦେଶ ଘେନି । ଚଳିଗଲେ ରାଧାମାଧବ ବେନି ।
ଯମୁନାକୂଳେ ରମ୍ୟ ତରୁବର । ଲତା ନିକୁଞ୍ଜ ଗୃହର ଆକାର ।
ନିର୍ଜନ ପ୍ରସର ଭୂମିରେ ମିଳି । ନିକୁଞ୍ଜେ ନିକୁଞ୍ଜେ କରନ୍ତି କେଳି ।
ବିବିଧବନ୍ଧେ ରାସକ୍ରୀଡ଼ା ଯେତେ । ଜୟଯୁକ୍ତ ହେଉ ସାରା ଜଗତେ ।

ଗଦ୍ୟାନୁବାଦ – ମେଘ ଘୋଟି ଆସିବାରୁ ତମାଳବୃକ୍ଷ ପରିପୂର୍ଣ୍ଣ ଘନ ଜଙ୍ଗଲରେ ଘୋର ଅନ୍ଧକାର ଘୋଟିଗଲା । ତହୁଁ ଶ୍ରୀରାଧାଙ୍କୁ ଦେଖି ନନ୍ଦ କହିଲେ – ''ହେ ରାଧିକେ, ଅନ୍ଧକାର ରାତ୍ରିରେ ଭୟକରୁଥିବା ମୋର ଏହି ପୁଅକୁ ଘରେ ପହଞ୍ଚାଇଦିଅ ।'' ନନ୍ଦଙ୍କର ଏହି ପ୍ରକାର ନିର୍ଦ୍ଦେଶରେ ରାଧାକୃଷ୍ଣ ଦୁହେଁ, ଯମୁନାକୂଳର ପଥ ପ୍ରାନ୍ତରେ ଥିବା ଦ୍ରୁମ ପରିପୂର୍ଣ୍ଣ କୁଞ୍ଜବନରେ ପ୍ରବେଶକରି ଯେଉଁ ରହସ୍ୟ ତଥା ଆମୋଦଜନକ କେଳି କରିଥିଲେ, ସେହି ରାଧାମାଧବଙ୍କ କେଳି ଜୟଯୁକ୍ତ ହେଉ ।

ବାଗ୍‌ଦେବତାଚରିତଚିତ୍ରିତଚିତ୍ତସଦ୍ମା
ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ,
ଶ୍ରୀବାସୁଦେବରତିକେଳିକଥାସମେତ –
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍'' । ୨ ।

ଧରଣୀଧରଙ୍କ ପଦ୍ୟାନୁବାଦ –

ବଚନ ଦେବତା ଚରିତ୍ରେ ଯା'ର, ଚିତ୍ରିତ ହୋଇଛି ଚିତ୍ତ-ସଦ୍ମର ।
ପଦ୍ମାବତୀର ଚରଣଚାରଣ, ଚକ୍ରବର୍ତ୍ତୀ ପଣେ ଅଟେ ନିପୁଣ ।
ସେ ଶ୍ରୀ କେବଳ ରତିକେଳି କଥା, ଯୁକ୍ତ ପ୍ରବନ୍ଧ କରୁଅଛି ଗାଥା ।
ଶ୍ରୀଜୟଦେବଙ୍କ କବିତା ରସ, କର୍ଣ୍ଣେ ପାନ କଲେ ହେବ ହରଷ ।

ଗଦ୍ୟ– ବାଣୀ ଆରାଧନାରେ ଅବିଚଳିତମନା ଏବଂ ନିଜର ନୃତ୍ୟରତା ପତ୍ନୀ ପଦ୍ମାବତୀଙ୍କ ଚରଣକୁ ନୃତ୍ୟଛନ୍ଦରେ ଚଳଚଞ୍ଚଳ କରିବାରେ ଚକ୍ରବର୍ତ୍ତୀ ଅର୍ଥାତ୍ ଶ୍ରେଷ୍ଠ ନୃତ୍ୟତତ୍ତ୍ୱଜ୍ଞ (ଅଥବା ଜଣେ ନିଷ୍ଠାପର ପ୍ରେମିକ ଭାବରେ ନିଜର ପ୍ରାଣପ୍ରିୟା ପଦ୍ମାବତୀଙ୍କ ମାନଭଞ୍ଜନ କାଳରେ ତାଙ୍କର ପାଦପତନ ପୂର୍ବକ ଅନୁନୟ ଆଦିରେ ନିପୁଣ), କବି ଜୟଦେବ; ଲକ୍ଷ୍ମୀନାରାୟଣ ବା ଶ୍ରୀରାଧାମାଧବଙ୍କ ପ୍ରଣୟ ରୂପକ କେଳି ବର୍ଣ୍ଣନାମୂଳକ ଏହି ରସମୟ କାବ୍ୟ ରଚନା କରୁଛନ୍ତି ।

**ଯଦି ହରିସ୍ମରଣେ ସରସଂ ମନୋ ଯଦି ବିଳାସକଳାସୁ କୁତୂହଳମ୍ ।**
**ମଧୁର କୋମଳକାନ୍ତପଦାବଳୀ ଶୃଣୁ ତଦା ଜୟଦେବସରସ୍ୱତୀମ୍ । ୩ ।**

ଧରଣୀଧରଙ୍କ ପଦ୍ୟାନୁବାଦ –

ଯେବେ ସୁଜନେ ହରିସ୍ମରଣରେ । ସରସ ମନ କରିଛ ନିର୍ଭରେ ।
ଯେବେ ସକଳ ବିଳାସ କଳାରେ । କୁତୂହଳ ମନ ହୋଇ ସେ ପାରେ ।
ମଧୁର କୋମଳ ପଦେ ରଚିତ । ଶ୍ରବଣ କର ଜୟଦେବ ଗୀତ ।

ଗଦ୍ୟ– ହେ ରସଜ୍ଞ ଭକ୍ତଜନତା, ଯଦି ରାଧାମାଧବଙ୍କ ସ୍ମରଣରେ ତୁମ ମନ ରସାଣିତ ହୋଇଛି, ଯଦି ବିଳାସକଳା ଅର୍ଥାତ୍ ନୃତ୍ୟଗୀତ ଆଦି କଳାବିଦ୍ୟା ପ୍ରତି ତୁମ ମନରେ କୌତୂହଳ ଜାତହୋଇଛି; ତେବେ ଶୁଣିବାକୁ ଶ୍ରୁତିସୁଖକର ଅର୍ଥାତ୍ ମଧୁର, କୋମଳ ତଥା ସୁନ୍ଦର ପଦାବଳୀଦ୍ୱାରା ରଚିତ ଜୟଦେବଙ୍କ ବାଣୀ ଅର୍ଥାତ୍ 'ଗୀତଗୋବିନ୍ଦ' ଶ୍ରବଣ କର ।

**ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ**
**ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେଃ ।**
**ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନ –**
**ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ । ୪ ।**

ଧରଣୀଧରଙ୍କ ପଦ୍ୟାନୁବାଦ –

ଉମାପତିଧର ଏକହିଁ ବ୍ୟକ୍ତି । ବଚନ ପଲ୍ଲବେ ଅଟେ ତା' ଶକ୍ତି ।।
କଠିନ ଦୁର୍ବୋଧ ଶୀଘ୍ର ରଚନା । ଶରଣ କେବଳ ଜାଣନ୍ତି ସିନା ।।

ଶୃଙ୍ଗାରରସ ରଚ଼ନାରେ କେହି । ଗୋବର୍ଦ୍ଧନାଚାର୍ଯ୍ୟ ସମାନ ନାହିଁ ॥
କବି ଭୂପତି ଧୋୟୀ ନାମେ ରାଜା । ଶ୍ରୁତିଧର ବୋଲି ଲୋକେ ତା' ପୂଜା ॥
ବଚ଼ନମାନଙ୍କ ସନ୍ଦର୍ଭଶୁଦ୍ଧି । ଜୟଦେବ ଏକା ଜାଣେ ସୁବୁଦ୍ଧି ॥

**ଗଦ୍ୟ—** ଉମାପତିଧର ନାମକ କବି କେବଳ ପଦଗୁଡ଼ିକୁ ପଲ୍ଲବିତ କରାଇ ଅନାବଶ୍ୟକ ଭାବରେ ବିସ୍ତାର କରାଇଥାଆନ୍ତି । କିନ୍ତୁ ପଦ ମଧ୍ୟରେ ଥିବା ଧ୍ୱନି ଓ ରସ ଆଦି ପ୍ରତି ସେ ଆଦୌ ସଚେତନ ନୁହନ୍ତି । ତେଣୁ ତାଙ୍କ କବିତା ମାଧୁର୍ଯ୍ୟପୂର୍ଣ୍ଣ ହୁଏନାହିଁ । ଶରଣ ନାମକ କବି ଯେଉଁ କବିତା ରଚ଼ନା କରନ୍ତି, ସେଥିରେ ଗୂଢ଼ଅର୍ଥଯୁକ୍ତ ପଦମାନ ରହିଥାଏ । ତେଣୁ ତାହା ସହଜରେ ଶ୍ରୋତାମାନଙ୍କ ପକ୍ଷରେ ବୋଧଗମ୍ୟ ହୁଏନାହିଁ । ଆହୁରି ମଧ୍ୟ ସେଥିରେ ପ୍ରସାଦ ଆଦି ଗୁଣ ନଥିବାରୁ, ତାହା ପାଠକ ଓ ଶ୍ରୋତାମାନଙ୍କ ମଧ୍ୟରେ ଆଦୃତ ହୋଇନଥାଏ । ସେହିପରି ଆଚାର୍ଯ୍ୟ ଗୋବର୍ଦ୍ଧନ ନାମକ କବି କେବଳ ଶୃଙ୍ଗାରରସ-ପ୍ରଧାନ କାବ୍ୟକବିତାଦି ରଚ଼ନାରେ ପ୍ରବୀଣ ଅଟନ୍ତି । ଅନ୍ୟାନ୍ୟ ରସରେ ରସାଣିତ କବିତା ରଚ଼ନା କରିବାରେ ସେ ପାରଦର୍ଶିତା ଦେଖାଇନାହାନ୍ତି । ତେଣୁ ତାଙ୍କ ରଚ଼ନା ସବୁଶ୍ରେଣୀର ପାଠକ ଓ ଶ୍ରୋତାମାନଙ୍କୁ ଆନନ୍ଦ ଦେଇନଥାଏ । କାରଣ ଶୃଙ୍ଗାରଭିନ୍ନ ହାସ୍ୟ, ବୀର ଓ କରୁଣରସାଦି ଯୁକ୍ତ କବିତା ହିଁ ସତ୍‌କାବ୍ୟ ରୂପେ ବିବେଚିତ ହୋଇଥାଏ । କବି ଗୋବର୍ଦ୍ଧନ ଆଚାର୍ଯ୍ୟ କେବଳ ଉତ୍କଟ ଶୃଙ୍ଗାରରସମୂଳକ କବିତା ରଚ଼ନା କରୁଥିବାରୁ, ତାଙ୍କ କବିତାଗୁଡ଼ିକ ବିଦ୍ୱତ୍ ସମାଜରେ ସେପରି ଆଦୃତ ହୁଏନାହିଁ ।

ଧୋୟୀ (ପବନଦୂତ ନାମକ ଖଣ୍ଡକାବ୍ୟର ପ୍ରଣେତା) ନାମକ କବି, ଯଦିଓ କବିମଣ୍ଡଳୀରେ ଶ୍ରେଷ୍ଠ ରୂପେ ପରିଗଣିତ ହୁଅନ୍ତି, ତାଙ୍କ କବିତାଗୁଡ଼ିକ କେବଳ ଶୁଣିବାକୁ ଭଲ ଲାଗେ ସିନା, ସେଥିରେ ଉନ୍ନତ କାବ୍ୟକୌଶଳ ପରିଲକ୍ଷିତ ହୁଏନାହିଁ । କିନ୍ତୁ ବିଷୟବସ୍ତୁ ଉତ୍ତମରୂପେ ପରିଚିତ କରାଇ, କାନ୍ତକୋମଳ ତଥା ମଧୁର ପଦାବଳୀ ଯୁକ୍ତ ବହୁରସ ସମାଶ୍ରିତ କାବ୍ୟ କବିତାଦି ରଚ଼ନା କରିଥିବାରୁ, କବି ଜୟଦେବଙ୍କ କାବ୍ୟରେ 'ସନ୍ଦର୍ଭଶୁଦ୍ଧି' ରୂପକ ଚମତ୍କାରିତା ପରିଲକ୍ଷିତ ହୋଇଥାଏ ।

*[ ମାଳବ ରାଗେଣ ରୂପକତାଳେନ ଗୀୟତେ । ( ଗୀତ – ୧ ) ]*

**ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍**
**ବିହିତବହିତ୍ରଚ଼ରିତ୍ରମଖେଦମ୍ ।**
**କେଶବ ! ଧୃତମୀନଶରୀର, ଜୟ ଜଗଦୀଶ ହରେ । (କ) ଧ୍ରୁବମ୍ ।**

**ପଦ୍ୟ –** ଜୟ ଜୟ ଜଗନ୍ନାଥ ଦେବ ମଧୁହାରୀ । ତୁମ୍ଭର ମହିମା କେହୁ କହିବ ବିସ୍ତାରି ॥
ପ୍ରଳୟ ପୟୋଧିଜଳେ ମୀନରୂପ ଧରି । ଶଙ୍ଖନାମେ ଦନୁଜକୁ ହେଳରେ ସଂହାରି ॥
ବେଦ ଉଦ୍ଧରିଣ ଆଣି ବିଧାତାକୁ ଦେଲ । ଜଗତ ହିତ ନିମନ୍ତେ ଛଡ଼ାଇ ଘେନିଲ ॥

ଗଦ୍ୟ – ହେ ଜଗଦୀଶ (ଜଗନ୍ନାଥ) ! ହେ ହରି ! ହେ କେଶବ ! ପ୍ରଳୟ କାଳରେ ସମୁଦ୍ରମାନେ ମିଳିତ ହୋଇ ସଂସାର ଜଳାର୍ଣ୍ଣବ ହୋଇଥିବା ସମୟରେ, ତୁମେ ଆଦୌ କ୍ଲାନ୍ତ ନହୋଇ ମୀନଶରୀର ଧାରଣପୂର୍ବକ ନୌକା ରୂପେ ଜଗତର ଅକ୍ଷୟଜ୍ଞାନ ବେଦକୁ ଉଦ୍ଧାରକରି କାଳକାଳକୁ କଥା ରଖିଯାଇଛ । ତୁମର ସେହି ମୀନରୂପର ଜୟହେଉ । ଅର୍ଥାତ୍ ଭକ୍ତମାନେ ତୁମର ସେହି ମୀନ ଅବତାରର ଜୟଗାନ କରୁଛନ୍ତି ।

**କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ –**
**ଧରଣିଧରଣକିଣଚକ୍ରଗରିଷ୍ଠେ ।**
**କେଶବ ! ଧୃତକଚ୍ଛପରୂପ ଜୟ ଜଗଦୀଶ ହରେ । (ଖ)**

ପଦ୍ୟ – କମଠ ମୂରତି କ୍ଷିତି ବିସ୍ତୀର୍ଣ୍ଣ ଗରିଷ୍ଠେ ।
ଧଇଲ ଚକ୍ର ଆକାରେ କଠିନ ସେ ପୃଷ୍ଠେ ।।

ଗଦ୍ୟ – ହେ ଜଗଦୀଶ (ଜଗନ୍ନାଥ) ! ହେ ହରି ! ହେ କେଶବ ! ତୁମେ କଚ୍ଛପ ଅବତାର ଧାରଣ କରି ତୁମର ବିସ୍ତୀର୍ଣ୍ଣ ପୃଷ୍ଠଦେଶରେ ପୃଥିବୀକୁ ଧରିଥିବା ଫଳରେ, ତହିଁରେ ଚକ୍ରାକାର ବ୍ରଣ ହୋଇଥିଲା । ସେହି ଗୌରବଯୁକ୍ତ ବ୍ରଣ ଫଳରେ ପୃଥିବୀ ତା'ର ଅକ୍ଷରେ ସଂସ୍ଥାପିତ ହୋଇପାରିଥିଲା । ତେଣୁ ତୁମର ସେହି କୂର୍ମ ସ୍ୱରୂପର ଜୟହେଉ ।

**ବସତି ଦଶନଶିଖରେ ଧରଣୀ ତବ ଲଗ୍ନା,**
**ଶଶିନି କଳଙ୍କକଳେବ ନିମଗ୍ନା ।**
**କେଶବ ! ଧୃତଶୂକରରୂପ, ଜୟ ଜଗଦୀଶ ହରେ । (ଗ)**

ପଦ୍ୟ– ଶୂକର ସ୍ୱରୂପେ ମହୀ ଦନ୍ତଶିଖେ ଧରି । ଚନ୍ଦ୍ରରେ କଳଙ୍କ କି ଦର୍ଶନେ ବସୁନ୍ଧରୀ ।।

ଗଦ୍ୟ– ହେ ଜଗଦୀଶ (ଜଗନ୍ନାଥ) ! ହେ ହରି ! ହେ କେଶବ ! ମହାପ୍ରଳୟ କାଳରେ ପୃଥିବୀ ଜଳମଗ୍ନ ହୋଇଥିବା ସମୟରେ, ତୁମେ ବରାହ ଅବତାର ହୋଇ ତାହାକୁ ଦନ୍ତ ଅଗ୍ରରେ ଧାରଣ କରିଥିଲ । ତୁମର ବିଶାଳ ଶୁଭ୍ରଦନ୍ତ ଚନ୍ଦ୍ରମଣ୍ଡଳ ପରି ଉଦ୍‌ଭାସିତ ହୋଇଥିଲା ଏବଂ ସେହି ଦନ୍ତାଗ୍ରରେ କ୍ଷୁଦ୍ର ପୃଥିବୀ ଚନ୍ଦ୍ରର କଳଙ୍କ ପରି ଶୋଭାପାଉଥିଲା । ତେଣୁ ତୁମର ସେହି ଶୂକରରୂପର ଜୟ ହେଉ ।

**ତବ କରକମଳବରେ ନଖମଦ୍‌ଭୁତଶୃଙ୍ଗମ୍,**
**ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍ ।**
**କେଶବ ! ଧୃତନରହରିରୂପ, ଜୟ ଜଗଦୀଶ ହରେ । (ଘ)**

ପଦ୍ୟ – ମହାକାୟା ବିସ୍ତାରିତ ଅତି ବଡ଼ ତୁଙ୍ଗ । ଦନୁଜର କଳେବର ବଦନଟି ସିଂହ ।।
ହିରଣ୍ୟକଶିପୁ ନଖେ ବିଦାରିଲ ଆଣି । କରକମଳରେ ତା'ର ତନୁ ଭୃଙ୍ଗ ଜାଣି ।।

ଗଦ୍ୟ – ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମର କରକମଳରେ ଯେଉଁ ଅଦ୍‌ଭୁତ ନଖର ଅଗ୍ରଭାଗ ରହିଛି, ତହିଁରେ ତୁମେ ହିରଣ୍ୟକଶିପୁ ନାମକ ଅସୁରର ଶରୀରରୂପୀ ଭ୍ରମରକୁ ବିଦାରଣ କରିଛ (ଭ୍ରମର ସର୍ବଦା କମଳର ଅଗ୍ରଭାଗକୁ ବିଦାରଣ କରିଥାଏ, ମାତ୍ର ଏ' କ୍ଷେତ୍ରରେ ତୁମର ଅଦ୍‌ଭୂତ ନଖ-ଶୃଙ୍ଗ ଦ୍ୱାରା ଅସୁରର ତନୁ ରୂପକ ଭୃଙ୍ଗ ବିଦାରିତ ହୋଇଛି ।) ତେଣୁ ହେ ଜଗଦୀଶ ! ତୁମର ସେହି ନରହରି (ନରସିଂହ) ଅବତାରର ଜୟହେଉ ।

**ଛଳୟସି ବିକ୍ରମଣେ ବଳିମଦ୍ଭୁତବାମନ,**
**ପଦନଖନୀରଜନିତଜନପାବନ ।**
**କେଶବ ! ଧୃତବାମନରୂପ, ଜୟ ଜଗଦୀଶ ହରେ । (ଙ)**

ପଦ୍ୟ – ଭଣ୍ଡିଲ ବଳିକି ରୂପ ଦେଖାଇ ବାମନ । ବିକ୍ରମି ଚରଣ ଗଲା ଅଶେଷ ଭୁବନ ॥
ଅନେକ କାଳର ଗଙ୍ଗା କମଣ୍ଡଳେ ସଞ୍ଚି । ଢାଳିଲା ତବ ଚରଣେ ହରଷେ ବିରଞ୍ଚି ॥
ପାଦକୁ ନ ଅଣ୍ଟି ମନ୍ଦାକିନୀ ବହିଯାଇ । ତୁଷାର କଣିକା ପ୍ରାୟ ନଖ କୋଣେ ରହି ॥
ତହୁଁ ସେ କ୍ଷରିତ ସୁରନଦୀ ତିନିପୁରେ । ଅପବିତ୍ରଜନଙ୍କ କଳୁଷ ଅପହରେ ॥

ଗଦ୍ୟ – ହେ ଜଗନ୍ନାଥ ! ହେ ହରି ! କେଶବ ! ତୁମେ ବାମନ ଅବତାର ଧାରଣ କରି ବଳି ନାମକ ଦୈତ୍ୟରାଜଙ୍କୁ ଛଳକପଟରେ ପ୍ରତିହତ କରିଛ । ସୁରନଦୀଗଙ୍ଗା ତୁମର ପଦନଖକୋଣରେ ଆଶ୍ରୟ ଗ୍ରହଣ କରି ଏହି ମର୍ତ୍ତ୍ୟମଣ୍ଡଳର ଜନମାନଙ୍କୁ ପବିତ୍ର କରିଥିଲେ । ତେଣୁ ତୁମର ସେହି ବାମନ ଅବତାରର ଜୟ ହେଉ ।

**କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍**
**ସ୍ନପୟସି ପୟସି ଶମିତଭବତାପମ୍ ।**
**କେଶବ ! ଧୃତଭୃଗୁପତିରୂପ, ଜୟ ଜଗଦୀଶ ହରେ । (ଚ)**

ପଦ୍ୟ– ପର୍ଶୁଧର ରୂପ ନାଥ ! ଅତ୍ୟନ୍ତ ବିକ୍ରମ । ଅବନୀପତି-କୁଳର ପ୍ରତ୍ୟକ୍ଷ କି ଯମ ॥
ନିସୂଦନ କଲ କ୍ଷତ୍ରି ଏକବିଂଶ ବାର । ସ୍ନାନ ତର୍ପଣାଦି କଲ ରୁଧିର-ଜଳର ॥
ଜଗତଜନମାନଙ୍କ ଯେତେ ଘୋରପାପ । ସେ ଜଳ ଅବଗାହନେ ଖଣ୍ଡେ ଭବତାପ ॥

ଗଦ୍ୟ – ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମେ ପରଶୁରାମ ଅବତାରରେ କ୍ଷତ୍ରିୟମାନଙ୍କୁ ବଧ କରି, ସେମାନଙ୍କ ରକ୍ତରେ ଜଗତକୁ ସ୍ନାନ କରାଇବା ସଙ୍ଗେ ସଙ୍ଗେ ସଂସାରରୁ ପାପ ଓ ତାପ ଦୂରକରିଛ । ହେ ଜଗଦୀଶ ! ତୁମର ସେହି ଭୃଗୁପତି ଅବତାରର ଜୟହେଉ ।

**ବିତରସି ଦିକ୍ଷୁ ରଣେ ଦିକ୍‌ପତିକମନୀୟମ୍**
**ଦଶମୁଖମୌଳିବଳିଂ ରମଣୀୟମ୍ ।**
**କେଶବ ! ଧୃତରଘୁପତିରୂପ ଜୟ ଜଗଦୀଶ ହରେ । (ଛ)**

ପଦ୍ୟ – ଦଶରଥ ଘରେ ରାମଚନ୍ଦ୍ର ଅବତାର । ବାନ୍ଧିଲ ସାଗରେ ସେତୁ ଘେନିଣ ପଥର ॥
ରଣେ ରାବଣର ଦଶଶିରକୁ ବିନାଶି । ବଳି ଦେଇ ଦିଗପାଳମାନଙ୍କୁ ସନ୍ତୋଷି ॥

ଗଦ୍ୟ – ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମେ ରାମ ଅବତାରରେ ଦଶାନନ ରାବଣକୁ ସଂହାରକରି ତାହାର ଦଶଗୋଟି ମସ୍ତକକୁ ଇନ୍ଦ୍ର, ଅଗ୍ନି, ଯମ, ନୈରତ, ବରୁଣ, ପବନ, କୁବେର, ଈଶାନ, ବ୍ରହ୍ମା ଓ ଅନନ୍ତ ରୂପୀ ଦଶଦିକ୍‌ପାଳଙ୍କୁ ରମଣୀୟ ବଳିରୂପେ ଅର୍ପଣ କରିଛ । ତେଣୁ ତୁମର ସେହି ଶ୍ରୀରାମ ଅବତାର ଜୟଯୁକ୍ତହେଉ ।

**ବହସି ବପୁସି ବିଶଦେ ବସନଂ ଜଳଦାଭମ୍**
**ହଳହତିଭୀତିମିଳିତଯମୁନାଭମ୍,**
**କେଶବ ! ଧୃତହଳଧରରୂପ, ଜୟ ଜଗଦୀଶ ହରେ । (ଜ)**

ପଦ୍ୟ – ବଳଭଦ୍ରରୂପ ଅକଳଙ୍କ ଚନ୍ଦ୍ର କାନ୍ତି । କଟୀ-ନୀଚୋଳ-ଯମୁନା ନୀଳ ଜଳ ଭ୍ରାନ୍ତି ॥

ଗଦ୍ୟ– ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମେ ହଳଧର ଅବତାରରେ ନୀଳଜଳଦମାଳା ସଦୃଶ ଯେଉଁ ନୀଳାମ୍ବର ପରିଧାନ କରିଥିଲ, ତାହା ଲାଙ୍ଗୁଳମୁନରେ ବିତାଡ଼ିତ ହେବା ଭୟରେ ଆତଙ୍କିତ ଯମୁନାର ଜଳଧାରା ସଦୃଶ ଶୋଭାପାଉଥିଲା । ଭକ୍ତ ଜନତା ତୁମର ସେହି ହଳଧର ସ୍ୱରୂପର ଜୟଗାନ କରୁଛନ୍ତି ।

**ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍**
**ସଦୟହୃଦୟ ଦର୍ଶିତପଶୁଘାତମ୍ ।**
**କେଶବ ! ଧୃତବୁଦ୍ଧଶରୀର, ଜୟ ଜଗଦୀଶ ହରେ । (ଝ)**

ପଦ୍ୟ – ସଦୟ ହୃଦୟ ବୁଦ୍ଧ ଶରୀର ବହିଲ । ପଶୁଘାତ ଅର୍ଥେ ଯଜ୍ଞବିଧିକୁ ଦୋଷିଲ ॥

ଗଦ୍ୟ – ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମେ ବୁଦ୍ଧ ଅବତାର ଧାରଣ କରି, ବେଦରେ ଥିବା ଯଜ୍ଞରେ ପଶୁବଧ ସୂଚକ ମନ୍ତ୍ରଗୁଡ଼ିକୁ ସଦୟ ହୃଦୟରେ ନିନ୍ଦା କରିଛ । ତୁମର ଏହି ଅଦ୍‌ଭୁତ, କଷ୍ଟଦାୟକ ତଥା କରୁଣାପୂର୍ଣ୍ଣ କାର୍ଯ୍ୟ ପାଇଁ ଭକ୍ତଜନତା ତୁମ ବୁଦ୍ଧ ସ୍ୱରୂପର ଜୟଗାନ କରୁଛନ୍ତି ।

**ମ୍ଳେଚ୍ଛନିବହନିଧନେ କରୟସି କରବାଳମ୍**
**ଧୂମକେତୁମିବ କିମପି କରାଳମ୍ ।**
**କେଶବ ! ଧୃତକଲ୍‌କିଶରୀର ଜୟ ଜଗଦୀଶ ହରେ । (ଞ)**

ପଦ୍ୟ – କଲ୍‌କିରୂପେ କରେ ଧରି ମହା ଅସିପତ୍ର ।
ଜ୍ୱଳନ ବଦନ ଅତି ଭୟଙ୍କର ଗାତ୍ର ॥
ମ୍ଳେଚ୍ଛ ପାପୀ ଦୁରାଚାର ସମୂହ ସଂହାରି । ଉଶ୍ୱାସିଲ କ୍ଷିତିଭାରା ଲୀଳାମାତ୍ର କରି ॥

ଗଦ୍ୟ — ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ତୁମେ ମ୍ଲେଚ୍ଛମାନଙ୍କ ବିନାଶ ନିମିତ୍ତ ଧୂମକେତୁ (ଲଞ୍ଜାତାରା) ସଦୃଶ ଭୟଙ୍କର ଖଡ୍‌ଗ ଧାରଣ କରିଛ । ତୁମର ସେହି କଲ୍‌କି-ଅବତାର ଜୟଯୁକ୍ତ ହେଉ !

ଶ୍ରୀଜୟଦେବକବେରିଦମୁଦିତମୁଦାରମ୍
ଶୃଣୁ ଶୁଭଦଂ ସୁଖଦଂ ଭବସାରମ୍ ।
କେଶବ ! ଧୃତଦଶବିଧରୂପ ଜୟ ଜଗଦୀଶ ହରେ । (୧୧)

ପଦ୍ୟ — ଶ୍ରୀଜୟଦେବ କବିଙ୍କ ରଚିତ ଏ ସ୍ତୋତ୍ର । ଶ୍ରବଣ ସୁଖଦ ଯେ ପବିତ୍ର କରେ ଗାତ୍ର ॥
ଭବସାଗର ତରଣେ ଯେ ଅଟଇ ସାର । ସଂସାରେ ସେ ଦଶବିଧ ରୂପର ପ୍ରଚାର ॥

ଗଦ୍ୟ — ଶ୍ରୀଜୟଦେବ କବିଙ୍କ ରଚିତ ଶ୍ରୀଜଗନ୍ନାଥଙ୍କ ଦଶବିଧ ରୂପର ଉଦାର ବର୍ଣ୍ଣନାକୁ ଭକ୍ତଜନମାନେ ଶ୍ରବଣ କର । ଏହି ଦଶାବତାର ସ୍ତୁତି ଶୁଭଦାୟକ, ଶୁଣିବାକୁ ସୁଖପ୍ରଦ ତଥା ଭବସାଗର ଉଦ୍ଧାରର ସାର ଅଟେ । ହେ ଜଗନ୍ନାଥ ! ହେ ହରି ! ହେ କେଶବ ! ସଂସାରର ହିତସାଧନ ନିମିତ୍ତ ଦଶବିଧ ରୂପେ ଅବତୀର୍ଣ୍ଣ ହୋଇଥିବା ତୁମର ଅବତାରମାନଙ୍କର ଜୟ ହେଉ ।

ବେଦାନୁଦ୍ଧରତେ ଜଗନ୍ନିବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଲେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ । ୫ ।

ପଦ୍ୟ— ମୀନରୂପେ ବେଦ ଉଦ୍ଧାରିଲ ପଶି ଜଳେ ।
ଧରଣୀ ପୃଷ୍ଠେ ବହିଲ କଚ୍ଛପ ରୂପରେ ॥
ଶୂକର ରୂପେ ପୃଥିବୀ ପାତାଳୁ ଉଦ୍ଧରି । ଦନ୍ତାଗ୍ରେ ଧଇଲ ଆହେ ଦେବ ମଧୁହାରୀ ॥
ନରସିଂହ ରୂପେ ହିରଣ୍ୟକୁ ବିଦାରିଲ । ଖର୍ବ ରୂପେ ଭିକ୍ଷା ମାଗି ବଳିକୁ ଛଳିଲ ॥
ପର୍ଶୁରାମ ରୂପେ କଲ କ୍ଷତ୍ରିୟ ସଂହାର । ରାମାବତାରେ ବଧିଲ ରାବଣ ଅସୁର ॥
ହଳଧର ରୂପେ ହଳ କରିଛ ଧାରଣ । ବୁଦ୍ଧରୂପେ ପଶୁବଧ କଲ ନିବାରଣ ॥
ମ୍ଲେଚ୍ଛ ସଂହାରଣେ କରବାଳ କରେ ଧରି ।
କଲ୍‌କି ରୂପେ ଅବତୀର୍ଣ୍ଣ ହୋଇଛ ମୁରାରି ॥
ଏମନ୍ତରେ ଦଶବିଧ ଅବତାର ହୋଇ । ସଂସାର ପ୍ରତିପାଳନ କରିଛ ଗୋସାଇଁ ॥

ଗଦ୍ୟ— ହେ ଦଶାବତାରକାରୀ ଶ୍ରୀକୃଷ୍ଣ ! ଯଥାକ୍ରମେ ଦଶଗୋଟି ଅବତାରରେ ଅବତୀର୍ଣ୍ଣ ହୋଇ, ବେଦକୁ ଉଦ୍ଧାର କରିଛ, ଜଗତକୁ ପୃଷ୍ଠରେ ଧାରଣ କରିଛ, ଭୂମଣ୍ଡଳକୁ ଦନ୍ତାଗ୍ରରେ ଧରି ପାତାଳରୁ ଉଦ୍ଧରି ଆଣିଛ । ତୁମେ ନରହରି ରୂପ ଧାରଣକରି

ହିରଣ୍ୟକଶିପୁକୁ ସଂହାର କରିବା ସଙ୍ଗେ ସଙ୍ଗେ ବାମନରୂପ ଧାରଣପୂର୍ବକ ବଳିରାଜାକୁ ଛଳନା କରି ବନ୍ଦୀ କରିଛ । ତୁମେ ପରଶୁରାମ ଅବତାରରେ କ୍ଷତ୍ରିୟମାନଙ୍କୁ ସଂହାର କରି ପୃଥିବୀକୁ ଦୁଷ୍ଟରାଜାମାନଙ୍କ ଅତ୍ୟାଚାରରୁ ରକ୍ଷା କରିଛ । ପୁଲସ୍ତ୍ୟଋଷିଙ୍କ ପୌତ୍ର ଦଶାନନ ରାବଣକୁ ଜୟକରି ଦେବକାର୍ଯ୍ୟ ସାଧନ କରିଛ । ତୁମେ ନୀଳାମ୍ବରଧାରୀ ହଳଧର ରୂପେ ମଧ ପ୍ରସିଦ୍ଧି ଅର୍ଜନ କରିଛ । ବୁଦ୍ଧ ଅବତାରରେ ତୁମେ କରୁଣାବିସ୍ତାର କରି ଜନସମୂହର ଉପକାର ସାଧନ କରିଛ । ପରିଶେଷରେ ମ୍ଳେଚ୍ଛମାନଙ୍କୁ ସଂହାର କରି ଜଗତକୁ ପାପତାପରୁ ଉଦ୍ଧାରକରିଛ । ତେଣୁ ହେ କୃଷ୍ଣ ! ହେ ଦଶବିଧରୂପଧାରୀ ଜଗନ୍ନାଥ, ତୁମକୁ ନମସ୍କାର ।

*[ଗୁର୍ଜରୀ ରାଗେଣ ଗୀୟତେ । (ନିଃସାର ତାଳାଭ୍ୟାଂ ଗୀୟତେ) । (ଗୀତ–୨)]*

**ଶ୍ରିତକମଳାକୁଚ୍‌ମଣ୍ଡଳ ଧୃତକୁଣ୍ଡଳ**
**କଳିତଲଳିତବନମାଳ, ଜୟ ଜୟ ଦେବ ହରେ । ଧ୍ରୁବମ୍ । (କ) ।**

ପଦ୍ୟ– କମଳାକୁଚ୍‌ମଣ୍ଡଳ ଆଶ୍ରୟ ଯାହାର । ମନୋହର ବନମାଳା ଶୋଭିତ ହୃଦର ॥
ଦେବ-ସୁର-ମୁନି କରୁଛନ୍ତି ଜୟକାର । ମଣିଗଣ ଶୋଭିତ କି କୁଣ୍ଡଳ ଶ୍ରୁତିର ॥

ଗଦ୍ୟ– କମଳାଙ୍କର କୁଚ୍‌ମଣ୍ଡଳକୁ ଆଶ୍ରୟକାରୀ, କର୍ଣ୍ଣରେ ମକରକୁଣ୍ଡଳଧାରୀ ଏବଂ କଣ୍ଠରୁ ପାଦ ପର୍ଯ୍ୟନ୍ତ ସୁନ୍ଦର ବନମାଳା ଧାରଣକାରୀ ହେ ହରି, ତୁମର ଜୟହେଉ ।

**ଦିନମଣିମଣ୍ଡଳମଣ୍ଡନ ଭବଖଣ୍ଡନ**
**ମୁନିଜନମାନସହଂସ, ଜୟ ଜୟ ଦେବ ହରେ । (ଖ)**

ପଦ୍ୟ– ଭବ-ତିମିର-ନାଶନେ ଆଦିତ୍ୟ ପ୍ରକାଶ । ମୁନିଜନମନମାନସରୋବର ହଂସ ॥

ଗଦ୍ୟ– ସୂର୍ଯ୍ୟମଣ୍ଡଳର ଅଳଙ୍କାର ସ୍ୱରୂପ, ସଂସାର ସାଗରର ଉଦ୍ଧାରକାରୀ, ମୁନିମାନଙ୍କ ଚିତ୍ତସ୍ୱରୂପ ମାନସରୋବରର ହଂସସ୍ୱରୂପୀ ହେ ଦେବ ହରି ! ତୁମର ଜୟହେଉ ।

**କାଳିୟବିଷଧରଗଞ୍ଜନ ଜନରଞ୍ଜନ**
**ଯଦୁକୁଳନଳିନ ଦିନେଶ, ଜୟ ଜୟ ଦେବ ହରେ । (ଗ)**

ପଦ୍ୟ – କାଳୀୟ ଭୁଜଙ୍ଗ ଦଳି ଜନମନ ରଞ୍ଜେ ।
ଯଦୁକୁଳ କମଳ ତପନ ତେଜ ଗଞ୍ଜେ ॥

ଗଦ୍ୟ– କାଳୀୟ ନାମକ ବିଷଧର ସର୍ପର ଗଞ୍ଜନକାରୀ, ଜନ-ସମାଜର ଆନନ୍ଦବର୍ଦ୍ଧକ, ଯଦୁବଂଶ ରୂପକ ପଦ୍ମବନର ବିକାଶର ସୂର୍ଯ୍ୟ ସଦୃଶ ହେ ଦେବ ହରି, ତୁମର ଜୟହେଉ ।

**ମଧୁମୁରନରକବିନାଶନ ଗରୁଡ଼ାସନ**
**ସୁରକୁଳକେଳିନିଦାନ, ଜୟ ଜୟ ଦେବ ହରେ । (ଘ)**

ପଦ୍ୟ – ନରକ ଦନୁଜ ମଧୁମୁର ଦର୍ପ ଗଞ୍ଜେ ।
ଦେବଙ୍କୁ ହରଷ ଦେଇ ଗରୁଡ଼ରେ ବିଜେ ।।

ଗଦ୍ୟ– ମଧୁ, ମୁର ଓ ନରକ ନାମକ ଅସୁରମାନଙ୍କ ବିନାଶକାରୀ, ଗରୁଡ଼ବାହନ, ଦେବତାମାନଙ୍କର କେଳିବର୍ଦ୍ଧନର ମୂଳ କାରଣ ହେ ଦେବ ହରି, ତୁମର ଜୟହେଉ ।

**ଅମଳକମଳଦଳଲୋଚନ ଭବମୋଚନ**
**ତ୍ରିଭୁବନଭବନନିଦାନ, ଜୟ ଜୟ ଦେବ ହରେ । (ଙ)**

ପଦ୍ୟ – ଅମଳକମଳ ନେତ୍ର ଭବଭୟ ନାଶି । ତ୍ରିଭୁବନ ସ୍ଥାନ ଯାର ପୂର୍ଣ୍ଣବ୍ରହ୍ମରାଶି ।।

ଗଦ୍ୟ – ନିର୍ମଳ ପଦ୍ମପତ୍ର ସଦୃଶ ନେତ୍ରଧାରୀ, ସଂସାର-ଜନମାନଙ୍କର ମୋକ୍ଷଦାତା, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆଦି ତ୍ରିଭୁବନ ସୃଷ୍ଟିର ମୂଳକର୍ତ୍ତା ହେ ଦେବ ହରି, ତୁମର ଜୟହେଉ ।

**ଜନକସୁତାକୃତଭୂଷଣ ଜିତଦୂଷଣ**
**ସମରଶମିତଦଶକଣ୍ଠ, ଜୟ ଜୟ ଦେବ ହରେ । (ଚ)**

ପଦ୍ୟ – ଜନକ ଦୁହିତା ହୃଦ-କଳସ-ମଣ୍ଡନ । ଜିଣିଲ ସମରେ ଦଶକଣ୍ଠ ଯେ ଦୂଷଣ ।।

ଗଦ୍ୟ – ଜନକରାଜଜେମା ସୀତାଙ୍କର କୁଚ଼କଳସରେ ମକର ଆଦି ନାନା ପ୍ରକାର ଆଲେଖ୍ୟ ଲେଖନରେ ଦକ୍ଷ ଅଥବା ଜାନକୀଙ୍କ ହୃଦୟର ଭୂଷଣ ସ୍ୱରୂପ, ଦୂଷଣ ନାମକ ରାକ୍ଷସର ଜୟକାରୀ ଅଥବା ସମସ୍ତ ପ୍ରକାର ଦୋଷରହିତ, ରାବଣ ପରି ଅତ୍ୟନ୍ତ ଅଭିମାନୀ ରାକ୍ଷସରାଜଙ୍କୁ ରଣକ୍ଷେତ୍ରରେ ବିନାଶକାରୀ ହେ ଦେବହରି, ତୁମର ଜୟହେଉ ।

**ଅଭିନବଜଳଧରସୁନ୍ଦର ଧୃତମନ୍ଦର**
**ଶ୍ରୀମୁଖଚନ୍ଦ୍ରଚ଼କୋର, ଜୟ ଜୟ ଦେବ ହରେ । (ଛ)**

ପଦ୍ୟ – ନବଘନଚାରୁତନୁ ଗିରିବର ପାଣି । ରମା-ବଦନ-ବିଧୁକୁ ଚକୋର କି ଜାଣି ।।

ଗଦ୍ୟ – ହେ ଦେବ ହରି, ତୁମର ରୂପ ନୂତନ ମେଘସଦୃଶ ନୀଳବର୍ଣ୍ଣ ଏବଂ ସେହି କାନ୍ତି ଅତ୍ୟନ୍ତ ସୁନ୍ଦର ହୋଇଥିବାରୁ ଗୋପିକା, ରୁକ୍ମିଣୀ ଆଦି ସୁନ୍ଦରୀ ତଥା ମହନୀୟା ନାରୀମାନେ ତୁମକୁ ପ୍ରାଣପ୍ରିୟ ରୂପେ ବରଣ କରିଛନ୍ତି । ଦେବ ଓ ଦାନବ ବାହିନୀର ସମ୍ମିଳିତ ବଳ ଯେଉଁଠାରେ ପରାଭୂତ ହୋଇଥିଲା, ସମୁଦ୍ରମନ୍ଥନ କାଳରେ ସେହି ମନ୍ଦର ପର୍ବତକୁ ତୁମେ ଏକାକୀ ପୃଷ୍ଠରେ ଧାରଣ କରି ଦେବତାମାନଙ୍କୁ ଅମୃତପାନ କରାଇଛ । ଶ୍ରୀ ଅର୍ଥାତ୍ ଲକ୍ଷ୍ମୀ ବା ରାଧିକାଙ୍କ ମୁଖମଣ୍ଡଳ ରୂପକ ଚନ୍ଦ୍ରରୁ ତୁମେ ଚକୋର ସଦୃଶ ସୁଧାପାନ କରି, ପରମତୃପ୍ତ ହୋଇଛ । ହେ ଦେବ, ତୁମର ଜୟ ହେଉ ।

**ତବ ଚରଣେ ପ୍ରଣତା ବୟମିତି ଭାବୟ**
**କୁରୁ କୁଶଳଂ ପ୍ରଣତେଷୁ, ଜୟ ଜୟ ଦେବ ହରେ । (୮)**

ପଦ୍ୟ — ପ୍ରଣାମ କରୁଁ ହେ ଦେବ ! ତବ ଶ୍ରୀପୟରେ ।
ଭକତ ଜନେ ସୁଦୟା କର ଦେବ ହରେ ॥
ମଙ୍ଗଳ ବିଧାନ କର ହେ ମଙ୍ଗଳମୟ । ଗାଇବୁଁ ଉଦାର କଣ୍ଠେ ତବ ଜୟ ଜୟ ॥

ଗଦ୍ୟ — ହେ ଦେବ ହରି, ଆମେ ଭକ୍ତଜନତା ତୁମ ଶ୍ରୀଚରଣରେ ପ୍ରଣାମ ନିବେଦନ କରୁଛୁଁ । ତୁମେ ଆମମାନଙ୍କ ଦୁର୍ଦ୍ଦଶାପ୍ରତି ସଦୟ ହୋଇ, ତୁମ ଅଧୀନସ୍ଥ ଜନମାନଙ୍କର ମଙ୍ଗଳ କର । ହେ ଦେବ, ତୁମର ଜୟହେଉ ।

**ଶ୍ରୀ ଜୟଦେବକବେରିଦଂ କୁରୁ ତେ ମୁଦମ୍**
**ମଙ୍ଗଳମୁଜ୍ଜ୍ୱଳଗୀତ, ଜୟ ଜୟ ଦେବ ହରେ । (୯)**

ପଦ୍ୟ— ଶ୍ରୀ ଜୟଦେବ କବିଙ୍କ ରଚିତ ଏ' ଗୀତ । ଆନନ୍ଦବର୍ଦ୍ଧନ କରୁ ଆହେ ଜଗନ୍ନାଥ ॥

ଗଦ୍ୟ— ଏହି ମଙ୍ଗଳମୟ ତଥା ଭାବଗାମ୍ଭୀର୍ଯ୍ୟପୂର୍ଣ୍ଣ ଶ୍ରୀଜୟଦେବ କବିଙ୍କ ରଚିତ ଗୀତ ତୁମର ଆନନ୍ଦ ବର୍ଦ୍ଧନ କରୁ । ଅଥବା ଜୟଦେବ କବିଙ୍କ ରଚିତ ମଙ୍ଗଳଜନକ ଏହି କାନ୍ତକୋମଳ ପଦାବଳୀଯୁକ୍ତ ଗୀତ ଧମସ୍ତଙ୍କୁ ପ୍ରମୁଦିତ କରୁ । ହେ ଦେବ ହରି, ତୁମର ଜୟହେଉ ।

**ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ-କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ**
**ବ୍ୟକ୍ତାନୁରାଗମିବ ଖେଳଦନଙ୍ଗଖେଦ — ସ୍ୱେଦାମ୍ବୁପୂରମନୁପୂରୟିତୁ ପ୍ରିୟଂ ବଃ । (୬)**

ପଦ୍ୟ — ପଦ୍ମାପୟୋଧର ତଟ ଆଲିଙ୍ଗନ କରି । ହୃଦୟ କୁଙ୍କୁମାଙ୍କିତେ ପ୍ରମୋଦେ ମୁରାରି ॥
ମନୁ ଅନୁରାଗ କି ଏ' ହୋଇଛି ବାହାର । କାମଖେଦ କଳେବରେ ପୂରେ ସ୍ୱେଦନୀର ॥
କୋଟି ମନମଥଗଞ୍ଜେ ଲାବଣ୍ୟ ବଦନ । ଚତୁର୍ଦ୍ଦଶଲୋକ ଆଲୋକିତ ଯା'ର ଧ୍ୟାନ ॥
ସେ କୃଷ୍ଣ ଚରଣେ ମନ ଦିଅ ସାଧୁଜନ । ହରିରସ ବିନୁ ଏହି ଦିବସ ଦୁର୍ଦ୍ଦିନ ॥

ଗଦ୍ୟ— ଲକ୍ଷ୍ମୀଙ୍କୁ ଗାଢ଼ ଆଲିଙ୍ଗନ କରିବା ସମୟରେ, ତାଙ୍କ କୁଚ ଯୁଗଳରେ କାମତାପର ଉପଶମ ନିମିତ୍ତ ବୋଳାଯାଇଥିବା କୁଙ୍କୁମଦ୍ୱାରା ଯାହାଙ୍କର ବକ୍ଷଦେଶ ଅଙ୍କିତ ହୋଇଛି, ରତିକେଳି ଦ୍ୱାରା ଯାହାଙ୍କ ବକ୍ଷଦେଶରେ ଅନୁରାଗ ସୂଚକ ଝାଳ ବିନ୍ଦୁ ବିନ୍ଦୁ ହୋଇ ଶୋଭାପାଉଛି, ଏପରି ଯେଉଁ ମଧୁସୂଦନ (ବିଷ୍ଣୁ ଅଥବା କୃଷ୍ଣ)ଙ୍କର ଅନୁରାଗ ଜର୍ଜରିତ ବକ୍ଷସ୍ଥଳ ତୁମମାନଙ୍କର (ଭକ୍ତଜନତାଙ୍କର) ମନୋବାଞ୍ଛା ପୂରଣ କରୁ ।

**ବସନ୍ତେ ବାସନ୍ତୀକୁସୁମସୁକୁମାରୈରବୟବୈ-**
**ର୍ଭ୍ରମନ୍ତୀ କାନ୍ତାରେ ବହୁବିହିତକୃଷ୍ଣାନୁସରଣାମ୍ ।**

**ଅମନ୍ଦ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା,**
**ବଳଦ୍‌ବାଧାଂ ରାଧାଂ ସରସମିଦମୂଚେ ସହଚରୀ । ୭ ।**

**ପଦ୍ୟ—** ଶୁଣ ହେ ସୁଜନେ ଏଥୁଁ ରସବଚନ । ମିଳିଲେ ଋତୁରାଜନ ବସନ୍ତ ବନ ॥
କାନ୍ତବିଚ୍ଛେଦେ ଯୁବତୀ ଜ୍ୱର ସମାନ । ଧଇର୍ଯ୍ୟ ବନକୁ କି ଏ' ଦାବଦହନ ॥
ଏମନ୍ତ ସମୟେ ତହିଁ ରାଧାସୁନ୍ଦରୀ । କୃଷ୍ଣର ବିରହେ ତନୁ ମଦନେ ଘାରି ॥
ତେଜିଣ ସଦନ ବୁଲେ ଘୋର ବିପିନେ । ମାଧବଙ୍କୁ ଅନୁସରି ଲୋଡ଼ଇ ବନେ ॥
ଅତି ସୁକୁମାର କର ଚରଣତଳ । ମାଧବୀ କୁସୁମଦଳ ତନୁ କୋମଳ ॥
ମନସିଜଜ୍ୱର ଚିନ୍ତା ଆକୁଳଭରେ । ନ ଜାଣଇ ଶ୍ରମପୀଡ଼ା ଚିତ୍ତବିକାରେ ॥
ରାଧାର ଏସନ ଦୁଃଖ ଦେଖିଣ ଦୂତୀ । କହଇ ଅଗ୍ରତେ ମିଳି ବଚନପ୍ରୀତି ॥

**ଗଦ୍ୟ—** ମାଧବୀଫୁଲ ପରି ସୁକୁମାରୀ ତଥା କୋମଳାଙ୍ଗୀ ରାଧା ପ୍ରଚଣ୍ଡ କନ୍ଦର୍ପଜ୍ୱରରେ ଅତ୍ୟନ୍ତ ପୀଡ଼ିତା ହୋଇ, ବସନ୍ତ କାଳରେ ଶ୍ରୀକୃଷ୍ଣଙ୍କୁ ବୃନ୍ଦାବନର ଗହନ କାନନରେ ଖୋଜି ଖୋଜି ବୁଲୁଥିବା ସମୟରେ, ପ୍ରେମପାଗଳୀ ଅବସ୍ଥାରେ ଦେଖି ସହଚରୀ ଦୂତୀ ତାଙ୍କୁ ସରସବଚନ ଭଙ୍ଗୀରେ କହିଥିଲେ ।

*[ ବସନ୍ତରାଗେଣ ଗୀୟତେ । ଯତିତାଳାଭ୍ୟାଂ ଗୀୟତେ । ଗୀତ-୩ ]*

**ଲଳିତଲବଙ୍ଗଲତାପରିଶୀଳନକୋମଳମଳୟ ସମୀରେ**
**ମଧୁକରନିକରକରମ୍ବିତକୋକିଳକୂଜିତକୁଞ୍ଜକୁଟୀରେ ।**
**ବିହରତି ହରିରିହ ସରସବସନ୍ତେ**
**ନୃତ୍ୟତି ଯୁବତିଜନେନ ସମଂ ସଖି ! ବିରହିଜନସ୍ୟ ଦୁରନ୍ତେ । (ଧ୍ରୁବମ୍) (କ)**

**ପଦ୍ୟ—** ଦେଖ ସଖି ଲାବଣ୍ୟ ଏ' ଲବଙ୍ଗଲତା । ନବୀନ ପଲ୍ଲବଦଳ କୋମଳଲତା ॥
ଶୀତଳେ ବହଇ ମନ୍ଦ ମଳୟାନିଳ । ମଧୁକର ମୁଖରାବ ଶୁଭେ ଚହଳ ॥
କୋକିଳ ମୃଦୁ-ମଧୁର-ଲଳିତ ବାଣୀ । ପୂରିତ କୁଞ୍ଜ-ସଦନ ମୋହନ ଜାଣି ॥
ବିରହୀଜନଙ୍କୁ ଏ' କି କରିବ ଅନ୍ତ । କାନ୍ତର ବିରହେ ଦିନୁଦିନ ଦୁଃଖିତ ॥
ଏମନ୍ତ ସମୟେ ଯାହା ସନ୍ନିଧେ ପତି । ହରଷେ ବଞ୍ଚଇ ଦିନ ଉତ୍ସୁକ ମତି ॥
ଦେଖ ସଖି ଅଳିଯୂଥ କୁସୁମକୁଳେ । ମଧୁଆଶେ ବସିଛନ୍ତି ଚୂତ-ବକୁଳେ ॥

**ଗଦ୍ୟ —** ହେ ରାଧେ, ମନୋଜ୍ଞ ଲବଙ୍ଗ ଲତାରୁ ଧୀରେ ଧୀରେ ବହି ଆସୁଥିବା ସୁବାସିତ ମଳୟପବନରେ ସୁଗନ୍ଧିତ ଭ୍ରମରମାନଙ୍କର ଗୁଣୁ ଗୁଣୁ ସ୍ୱର ସହିତ ସମତାଳରେ ପ୍ରକଟିତ ହେଉଥିବା କୋକିଳମାନଙ୍କ କୁହୁତାନରେ ଗୁଞ୍ଜରିତ ନିକୁଞ୍ଜକୁଟୀର ମଧରେ ଏବଂ ବିରହିଣୀ ଯୁବତୀମାନଙ୍କ ପକ୍ଷରେ କଷ୍ଟଦାୟକ ଏହି ବସନ୍ତଋତୁରେ ଶ୍ରୀକୃଷ୍ଣ ଗୋପଯୁବତୀଙ୍କ ଗହଣରେ ନୃତ୍ୟ କରୁଛନ୍ତି ।

**ଉନ୍ମଦମଦନମନୋରଥପଥିକବଧୂଜନଜନିତବିଳାପେ,**
**ଅଳିକୁଳସଂକୁଳକୁସୁମସମୂହନିରାକୁଳ ବକୁଳକଳାପେ । (ଖ)**

**ପଦ୍ୟ –** ମଦନେ ଉନ୍ମତ୍ତ ଅତି ପଥିକ ପ୍ରିୟା । ବିଳାପ କରନ୍ତି ଯହୁଁ ନଇଲେ ନାହା ।
ବକୁଳ ପୁଷ୍ପେ ଭ୍ରମର ଶରଧା ଅତି । ତେଣୁ ସେ ସୁଗନ୍ଧେ ତା'ର ବ୍ୟାକୁଳ ମତି ॥

**ଗଦ୍ୟ –** ଯେଉଁ ବସନ୍ତ କାଳରେ ରତିକାମନାରେ ଉନ୍ମତ୍ତା ହୋଇଥିବା ପଥିକମାନଙ୍କ ପ୍ରଣୟିନୀମାନେ ପ୍ରିୟତମଙ୍କ ବିରହରେ ବ୍ୟଥିତା ହୋଇ ବିଳାପ କରୁଛନ୍ତି ଏବଂ ଯେଉଁ ସମୟରେ ବଉଳ ଫୁଲର ସୁଗନ୍ଧରେ ଆକୁଳ ହୋଇ ଭ୍ରମରମାନେ ତା'ର ଚାରିପଟେ ଗୁଣୁଗୁଣୁ ସ୍ୱରରେ ଗୁଞ୍ଜନ କରୁଛନ୍ତି, ସେପରି ଦୁଃସହ ବସନ୍ତ କାଳରେ ଶ୍ରୀକୃଷ୍ଣ ଗୋପଯୁବତୀଗଣଙ୍କ ଗହଣରେ ନୃତ୍ୟ କରୁଛନ୍ତି ।

**ମୃଗମଦସୌରଭରଭସବଶମ୍ବଦନବଦଳମାଳତମାଳେ,**
**ଯୁବଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଳେ । (ଗ)**

**ପଦ୍ୟ–** ଦେଖ ସଖି ! ନବଦଳ ତମାଳବନ । କସ୍ତୁରୀ ଲେପନ ପ୍ରାୟ ଅତି ଶୋଭନ ॥
ଯୁବାଜନ ହୃଦୟ ବିଦାରିବା ପାଇଁ । ଫୁଟିଛି କିଂଶୁକ କାମନଖ କି ଏହି ॥

**ଗଦ୍ୟ–** କସ୍ତୂରୀର ସୁଗନ୍ଧ ଚାରିଆଡେ ପରିବ୍ୟାପ୍ତ ହୋଇଛି । ତା' ଫଳରେ ଯୁବାଯୁବତୀଙ୍କ ମନ ପ୍ରେମକେଳି ପ୍ରତି ଆକୃଷ୍ଟ ହେଉଛି । ଆଉ ମଧ୍ୟ ତମାଳ ବୃକ୍ଷରେ କଅଁଳପତ୍ର ଜାତ ହୋଇ ଯୁବା ମନକୁ ଅନୁରାଗପୂର୍ଣ୍ଣ କରୁଛି । ତା' ବ୍ୟତୀତ କାମଭାବନାରେ ରସସିକ୍ତ ହୋଇଥିବା ଯୁବାଜନମାନଙ୍କ ହୃଦୟକୁ ବିଦୀର୍ଣ୍ଣ (ପଳାଶଫୁଲଗୁଡ଼ିକ ଲାଲରଙ୍ଗ ତଥା ଈଷତ୍‌ବକ୍ର ହୋଇଥିବାରୁ) କରିବା ପାଇଁ ପଳାଶଫୁଲଗୁଡ଼ିକ କାମଦେବର ନଖପରି ବନରେ ଶୋଭାପାଉଛନ୍ତି । ଏପରି ଏକ ଦୁଃଖଦାୟକ ବସନ୍ତ କାଳରେ ଶ୍ରୀକୃଷ୍ଣ (ତୁମକୁ ତ୍ୟାଗ କରି) ଗୋପ ନାଗରୀମାନଙ୍କ ମେଳରେ କ୍ରୀଡ଼ାରସରେ ମାତିଛନ୍ତି ।

**ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାସେ,**
**ମିଳିତଶିଳୀମୁଖପାଟଳିପଟଳକୃତସ୍ମରତୂଣ ବିଳାସେ । (ଘ)**

**ପଦ୍ୟ –** ନାଗେଶ୍ୱର କୁସୁମର ବିକଚ ଶୋଭା । ମଦନରାୟ କନକଦଣ୍ଡର ପ୍ରଭା ॥
ପାଟଳି କୁସୁମେ ବଶେ ମଧୁପଶ୍ରେଣୀ । ମକରଧ୍ୱଜର ଶରଭାର କି ଜାଣି ॥

**ଗଦ୍ୟ –** କନ୍ଦର୍ପନୃପତିଙ୍କର ସୁବର୍ଣ୍ଣଦଣ୍ଡଥିବା ଛତ୍ରପରି ଏହି କାନନରେ ନାଗେଶ୍ୱର ଫୁଲ ଫୁଟିଛନ୍ତି ଏବଂ ଆହୁରି ମଧ୍ୟ ଏହି ଗହନବନରେ, ବିରହୀମାନଙ୍କ ହୃଦୟ ବିଦୀର୍ଣ୍ଣକାରୀ ଶରଗୁଡ଼ିକ ତୂଣୀରରେ ଖଞ୍ଜା ହେଲା ପରି ବୃକ୍ଷମାନଙ୍କରେ ପାଟଳିଫୁଲ [illegible] ମନକୁ

କାମବାସନାରେ ଉନ୍ମତ୍ତ କରାଉଛି । ଏପରି ଏକ କଷ୍ଟଦାୟକ ବସନ୍ତ ସମୟରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ଲୀଳାବିଳାସରେ ମାତିଛନ୍ତି ।

**ବିଗଳିତଲଜ୍ଜିତଜଗଦବଲୋକନତରୁଣକରୁଣକୃତହାସେ,**
**ବିରହିନିକୃନ୍ତନକୁନ୍ତମୁଖାକୃତିକେତକିଦନ୍ତୁରିତାଶେ । (ଙ)**

ପଦ୍ୟ – ଦେଖ ସଖି ! ବିକସିତ କରୁଣା ପୁଷ୍ପ । ଜଗତଜନଙ୍କୁ ହସିବାର ସ୍ୱରୂପ ।।
ଏ' ମଧୁସମୟେ ଯୁବଜନ ଯୁବତୀ । ଯହୁଁ ସେ ଛାଡ଼ିଲେ ଲଜ୍ଜା ଚଞ୍ଚଳମତି ।।
ବିରହୀ ଜନ ହୃଦୟେ ବାଧଇ କି ସେ । କାମକୁନ୍ତ ଘାତ କି କେତକୀ ବିକାସେ ।।

ଗଦ୍ୟ – ବସନ୍ତ-ବାସନ୍ତୀରେ ଯୁବାଯୁବତୀ ଲଜ୍ଜା ତ୍ୟାଗକରି ମଦନମହୋତ୍ସବରେ ମାତିଥିବାରୁ ନବପଲ୍ଲବିତ କରୁଣା ନାମକ ବୃକ୍ଷରେ ଧଳାଫୁଲ ଫୁଟି (ଟଭାଫୁଲ) ଜଗତକୁ ହସିଲା ପରି ବନରେ ଶୋଭାପାଉଛି । ଆହୁରି ମଧ୍ୟ ବିରହୀମାନଙ୍କ ହୃଦୟକୁ କୁନ୍ତରେ ଚିରି ଛିନ୍ନଭିନ୍ନ କଲାପରି ମୁନିଆଦାନ୍ତ ସଦୃଶ କଣ୍ଟାଯୁକ୍ତ କିଆଫୁଲ ଫୁଟି ବନଭୂମିକୁ ସୁଗନ୍ଧରେ ମହକାଇ ଦେଉଛି । ଏପରି ଏକ ମହକପୂର୍ଣ୍ଣ ବସନ୍ତ କାଳରେ ଶ୍ରୀକୃଷ୍ଣ ଗୋପଯୁବତୀଙ୍କ ସହିତ ମିଶି ନୃତ୍ୟ କରୁଛନ୍ତି ।

**ମାଧବିକାପରିମଳଲଳିତେ ନବମାଳତିଜାତିସୁଗନ୍ଧୌ,**
**ମୁନିମନସାମପି ମୋହନକାରିଣି ତରୁଣାକାରଣବନ୍ଧୌ । (ଚ)**

ପଦ୍ୟ – ପରିମଳ ଲଳିତ ମାଧବୀ ପ୍ରକାଶ । ନବୀନ ମାଳତୀ ଜାତି ସୁଗନ୍ଧବାସ ।।
ମୁନିଜନମନ କି ଏ' ମୋହ କରଇ । ପାଦପକୁଳକୁ ଅତି ପୀରତି ଏହି ।।

ଗଦ୍ୟ – ମାଧବୀଫୁଲର ଲଳିତ ସୁଗନ୍ଧରେ ପ୍ରଫୁଲ୍ଲିତ, ନୂତନ-ଫୁଟିଥିବା ମାଳତୀ ଓ ଜାଇ ଫୁଲର ସୌରଭରେ ସୁଗନ୍ଧିତ, ମୁନିମାନଙ୍କ ମାନସରେ କାମବିକାର ଜାତକାରୀ ଏବଂ ଯୁବାଯୁବତୀଙ୍କର ସ୍ୱାଭାବିକ ସଖା ଏହି ବସନ୍ତ ସମୟ ଜଗତକୁ ଉଲ୍ଲସିତ କରୁଛି । ଏପରି ଏକ ଉଲ୍ଲାସମୟ ବସନ୍ତର ପ୍ରାଦୁର୍ଭାବରେ ଶ୍ରୀକୃଷ୍ଣ ଗୋପକାମିନୀମାନଙ୍କ ସହିତ ହସଖେଳରେ ମାତି ବନବିହାର କରୁଛନ୍ତି ।

**ସ୍ଫୁରଦତିମୁକ୍ତଲତାପରିରମ୍ଭଣପୁଲକିତମୁକୁଳିତଚୂତେ,**
**ବୃନ୍ଦାବନବିପିନେ ପରିସରପରିଗତଯମୁନାଜଳପୂତେ । (ଛ)**

ପଦ୍ୟ – ପ୍ରସରିତ ଲତା ଘନତରୁକୁ ବେଢ଼ି । ଆଲିଙ୍ଗନ କରେ କି ଏ' ନିବିଡେ ଜଡ଼ି ।।
ନାରୀ ପରିରମ୍ଭଣେ ବଲ୍ଲଭ ଯେମନ୍ତ । ମୁକୁଳିତ ବକୁଳେ କି ପଲ୍ଲବେ ଚୂତ ।।
ଅତିରମ୍ୟ ବୃନ୍ଦାବନ କାନନ ଏହି । ପବିତ୍ର ଯମୁନାଜଳ ଯାଉଛି ବହି ।।

ଗଦ୍ୟ– ହେ ସଖି ! ଏହି ଋତୁରାଜ ପ୍ରଭାବରେ ମାଧବୀ ଲତା ଫୁଲରେ ପରିପୂର୍ଣ୍ଣ ହୋଇ ଆମ୍ବଗଛରେ ଲଟିଥିବାରୁ, ସେଥିରେ ମଧ୍ୟ ବଉଳ ଦେଖାଦେଇଛି । ଅର୍ଥାତ୍

ପୁଷ୍ପବତୀ ମାଧବୀଲତାର ଆଲିଙ୍ଗନରେ ଆମ୍ରବୃକ୍ଷ ମଧ୍ୟ ରୋମାଞ୍ଚିତ ହେଲାପରି ମଞ୍ଜରୀ ପରିପ୍ରକାଶ କରିଛି । ସାଧାରଣ ଯୁବା-ଯୁବତୀଙ୍କ କଥା କହିବା କ'ଣ, ଜଡ଼ଜଗତରେ ମଧ୍ୟ ବାସନ୍ତୀ ଲୀଳାର ସ୍ଫୁରଣ ଦେଖାଦେଇଛି । ଯମୁନାର ପବିତ୍ର ଜଳରେ ସିକ୍ତ ବୃନ୍ଦାବନର ନିଘଞ୍ଚ ଅରଣ୍ୟ ମଧ୍ୟରେ ଏପରି ଉନ୍ମାଦନାକାରୀ ବସନ୍ତ ସମୟରେ ଶ୍ରୀକୃଷ୍ଣ ତୁମକୁ ତ୍ୟାଗ କରି, ଗୋପକାମିନୀଜନଙ୍କ ସହିତ ଏକାନ୍ତରେ ନୃତ୍ୟ କରିବା ସଙ୍ଗେ ସଙ୍ଗେ କ୍ରୀଡ଼ାବିଳାସରେ ମାତିଛନ୍ତି ।

ଶ୍ରୀଜୟଦେବଭଣିତମିଦମୁଦୟତି ହରିଚରଣସ୍ମୃତିସାରମ୍,
ସରସବସନ୍ତସମୟବନବର୍ଣ୍ଣନମନୁଗତମଦନବିକାରମ୍ । ବିହରତି....(ଜ)

ପଦ୍ୟ — ଅତି ସରସ ବସନ୍ତ ଋତୁଙ୍କ ସାର । ମଳୟ ସମୀର ଧୀର କାମ ସଧୀର ॥
ମଦନେ ଉନ୍ମତ୍ତ ସର୍ବଜୀବ ତରଳ । ରହି ରସଶ୍ରୁତି ପାନେ ଜୀବ ନିର୍ମଳ ॥

× × × ×

ଏମନ୍ତ ସମୟେ ତୋତେ ଉପେକ୍ଷି ହରି । ବିହରଇ ସଙ୍ଗେ ଘେନି ବରଜନାରୀ ॥
ହରି-ଚରଣ-ସ୍ମରଣ ସ୍ମୃତିମଧୁର । ଜୟଦେବ ଭଣେ ବନବର୍ଣ୍ଣନ ସାର ॥

ଗଦ୍ୟ — ଶ୍ରୀଜୟଦେବ କବି ଶ୍ରୀହରିଙ୍କ ପାଦପଦ୍ମର ସ୍ମୃତିକୁ ଜୀବନର ସାର ବୋଲି ମନେକରି, ଯେଉଁ ସମୟରେ ଯୁବାଜନଙ୍କ ମନରେ କାମ ବିକାର ଜାତ ହୁଏ, ସେହି ସରସ ବସନ୍ତ କାଳରେ ବନବର୍ଣ୍ଣନ କରିଛନ୍ତି । ସେହି ରସମୟ ବନବର୍ଣ୍ଣନ ଶ୍ରୀକୃଷ୍ଣଙ୍କ ଲୀଳା ରୂପକ ପୁଟରେ ରସାଣିତ ହୋଇଥିବାରୁ, ତାହା ଜଗତରେ ପ୍ରସାର ଲାଭ କରିଅଛି ।

ଦରବିଗଳିତମଲ୍ଲୀବଲ୍ଲିଚଞ୍ଚତ୍ପରାଗ
ପ୍ରକଟିତପଟ ବାସୈର୍ବାସୟନ୍‌କାନନାନି ।
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁ-
ପ୍ରସରଦସମବାଣପ୍ରାଣବଦ୍‌ଗନ୍ଧବାହଃ । ୮ ।

ପଦ୍ୟ — ଦେଖି ସଖି ! ମଲ୍ଲିକା କୁସୁମ ଫୁଟିଲା । ଉଛୁଳି ପରାଗ ଲତାପୁଟେ ପଡ଼ିଲା ॥
ପ୍ରକଟିତ ସୁବାସ ପୂରିତ କାନନ । ବିରହୀଜନଙ୍କ ଚିତ୍ତ କରେ ଦହନ ॥
କେତକୀ ସୁଗନ୍ଧ ଘେନି ମୃଦୁପବନ । ପ୍ରସରିଲା କାମଶର ଦହିବ ପ୍ରାଣ ॥

ଗଦ୍ୟ — ହେ ସଖି, ଏହି ବସନ୍ତକାଳୀନ କାନନରେ ମଲ୍ଲିକାଲତାରେ ଈଷଦ୍‌ପ୍ରସ୍ଫୁଟିତ ମଲ୍ଲୀକୁସୁମମାନଙ୍କରୁ ପରାଗ ବାହାରି, ତାହାର ପୁଷ୍ପରେଣୁଦ୍ୱାରା ପବନକୁ ସୁଗନ୍ଧିତ କରିଛି । ସେହି ସୁଗନ୍ଧଯୁକ୍ତ ପବନ ସମଗ୍ର ବନଭୂମିରେ ଚହଟିଯାଇ ପରିବେଶକୁ ଆମୋଦଯୁକ୍ତ କରିଛି । ଆହୁରି ମଧ୍ୟ ସେହି ସୁଗନ୍ଧିତ ବାୟୁ ତା'ର ପରମମିତ୍ର କେତକୀ ଫୁଲର ସୁଗନ୍ଧ ସହିତ ମିଳିତ ହୋଇ କାମଦେବଙ୍କୁ ଉଜ୍ଜୀବିତ କରାଇବା ସଙ୍ଗେ ସଙ୍ଗେ

ବିରହୀମାନଙ୍କ ହୃଦୟକୁ ଦହନ କରୁଛି । ନବମଲ୍ଲିକା କାମଦେବର ଅନ୍ୟତମ ବାଣ ହୋଇଥିବାରୁ, ତା'ର ସୁଗନ୍ଧ କେତକୀଫୁଲର ସୁଗନ୍ଧ ସହିତ ମିଳିତ ହୋଇ, ବିରହୀ ବିରହିଣୀଙ୍କ ହୃଦୟକୁ କାମବାଣଦ୍ୱାରା ଉନ୍ମଥିତ କରୁଛି ।

**ଉନ୍ମୀଳନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଧୂତଚୂତାଂକୁର-**
**କ୍ରୀଡ଼ତ୍‌କୋକିଳକାକଳୀକଳକଳୈରୁଦ୍‌ଗୀର୍ଣ୍ଣକର୍ଣ୍ଣଜ୍ୱରାଃ**
**ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ-**
**ପ୍ରାପ୍ତା ପ୍ରାଣସମା ସମାଗମରସୋଲ୍ଲାସୈରମୀ ବାସରାଃ ।୯।**

ପଦ୍ୟ — ଏମନ୍ତ ବହନ୍ତେ ଧୀରେ ମଳୟାନିଳ । ଅଙ୍କୁର ହୋଇଲେ ଅଗ୍ରେ ଚୂତ ବକୁଳ ॥
ଦେଖିଣ ହରଷ ଅତି କୋକିଳକୁଳ । କୁହୁ କୁହୁ ଶବଦରେ କରନ୍ତି ରୋଳ ॥
ଉନ୍ମତ୍ତଭରେଣ ଅତି ଆଳାପ ବାଣୀ । ଶୁଣି ଚିତ୍ତ ଧରିବ କି ବିରହୀପ୍ରାଣୀ ॥
ଉଜାଗର ମଧୁଗନ୍ଧ ଲୋଭେ ଭ୍ରମର । ମତ୍ତଭରେ ଧ୍ୱନି କରେ ଚୂତ ଶିଖର ॥
କ୍ରୀଡ଼ନ୍ତି କୋକିଳ କୋଳାହଳ ଶବଦେ । ଶୁଣନ୍ତି ବିରହୀ କର୍ଣ୍ଣଜ୍ୱର ବିଷାଦେ ॥
ପଥିକ ବିଦେଶୀଜନ ଅତି ଉଚ୍ଛନ୍ନ । ନିଜ ରାମା ପ୍ରିୟବତୀ ସୁମରି ମନ ॥
ଗତ କେଳୀରସ ମନେ କରିଣ ଧ୍ୟାନ । ଅତିଶୟ ଦୁଃଖେ ନେଲେ ରଜନୀଦିନ ॥
ଅବଧି ସୁମରି କାନ୍ତ ଆକୁଳମତି । ପ୍ରବେଶ ହୋଇଲେ ପ୍ରାଣ ସମାନ ପତି ॥
ଅତି ହରଷିତ ବାମା ଉଲ୍ଲାସଚିତ୍ତ । ନାନାରସେ ଦିନ ନେବେ କାମିନୀକାନ୍ତ ॥
ଏମନ୍ତ ସମୟେ ତୋତେ ଉପେକ୍ଷି ହରି । ବିହରଇ ସଙ୍ଗେ ଘେନି ବରଜ ନାରୀ ॥

ଗଦ୍ୟ — ହେ ସଖି, ଏହି ବସନ୍ତକାଳୀନ ଦିନଗୁଡ଼ିକ ପଥିକ ବିରହୀମାନଙ୍କ ପକ୍ଷରେ ଅତ୍ୟନ୍ତ ଦୁଃଖପ୍ରଦ ହୋଇଛି । କାରଣ ଆମ୍ରକୁଞ୍ଜରେ ବିକସିତ ହୋଇଥିବା ବଉଳରୁ ମଧୁ ପିଇବା ଲୋଭରେ ଭ୍ରମରମାନେ ଆସି ତାହାକୁ କମ୍ପିତ କରାଉଥିବାରୁ, ସେଥି ସହିତ କ୍ରୀଡ଼ା କରୁଥିବା କୋକିଳମାନେ ଚଞ୍ଚଳ ହୋଇ କଳକଳ ତଥା କୁହୁତାନରେ କୂଜନ କରୁଛନ୍ତି । କୋକିଳମାନଙ୍କର ସେହି କଳକୂଜନ ପଥିକ ବିରହୀଜନମାନେ ଶୁଣି ଆତଙ୍କିତ ହୋଇଉଠୁଛନ୍ତି । ତା' ଫଳରେ ସେମାନଙ୍କର କର୍ଣ୍ଣଜ୍ୱର ଅର୍ଥାତ୍ ବିରହସନ୍ତାପ ବୃଦ୍ଧି ହେଉଛି । ତା' ବ୍ୟତୀତ ସେହି ପଥିକଜନମାନେ ନିଜ ଜୀବନ-ପ୍ରତିମା ସଦୃଶ ପ୍ରିୟତମାଙ୍କ ସହିତ ସେମାନଙ୍କ ରତିକେଳି ତଥା ସମାଗମ ସୁଖର ସ୍ମରଣରେ ଧ୍ୟାନାବସ୍ଥିତ ହୋଇ ବହୁକଷ୍ଟରେ ଦିନଗୁଡ଼ିକ ବିତାଉଛନ୍ତି ।

ଆମ୍ର ମଞ୍ଜରୀର ସଂଦର୍ଶନ, ଭ୍ରମରମାନଙ୍କ ଗୁଞ୍ଜନ, କୋକିଳମାନଙ୍କର କଳକୂଜନ ତଥା ପ୍ରାଣସଦୃଶ ପ୍ରିୟତମାଙ୍କ ସ୍ମରଣରେ ପଥିକ ବିରହୀମାନେ ବିଚ୍ଳିତ ହୋଇ ବହୁକଷ୍ଟରେ ବସନ୍ତକାଳୀନ ଦିନଗୁଡ଼ିକ ଅତିବାହିତ କରୁଛନ୍ତି ।

**ଅନେକନାରୀପରିରମ୍ଭସଂଭ୍ରମସ୍ଫୁରନ୍ମନୋହାରିବିଳାସଲାଳସମ୍ ।**
**ମୁରାରିମାରାଦୁପଦର୍ଶୟନ୍ତ୍ୟସୌ ସଖୀ ସମକ୍ଷଂ ପୁନରାହ ରାଧିକାମ୍ । ୧୦ ।**

ପଦ୍ୟ – ଏସନ ସମୟେ ସଖି ! ଦେବ ମୁରାରି ।
ଆଲିଙ୍ଗନ ସେ ଅନେକ ଯୁବତୀ କରି ॥
ମନୋହାରିଣୀଏ କୃଷ୍ଣକେଳି ଲାଳସେ । ଉତ୍ସୁକ ହେଉଅଛନ୍ତି ଅତି ହରଷେ ॥
ଯେସନରେ କ୍ରୀଡ଼ା କରୁଛନ୍ତି ମାଧବ । ଦେଖିଲା କ ସହଚରୀ ତେସନ ଭାବ ॥
ପୁଣ ପୁଣ କହେ ସଖୀ ବାମା ଅଗ୍ରତ । ଶୁଣ ତୁ ସଜନି ! ଏକ କରିଣ ଚିତ୍ତ ॥

ଗଦ୍ୟ – ଅନେକ ଗୋପଯୁବତୀଙ୍କ ଆଲିଙ୍ଗନଜନିତ ସୁଖ ଅନୁଭବରୁ ଯେଉଁ ବିଳାସ ତାଙ୍କ ଅଙ୍ଗ ଅଙ୍ଗରେ ସ୍ଫୁରିତ ହେଉଛି ଏବଂ ସେହି ମନୋହାରୀ କେଳି ହେତୁରୁ ଯାହାଙ୍କର ଶରୀରରେ ଲୀଳାବିଳାସର ଔତ୍ସୁକ୍ୟ ଫୁଟିଉଠିଛି, ଏମନ୍ତ ରସ-ବିଳାସୀ ଶ୍ରୀକୃଷ୍ଣଙ୍କ ଆଡ଼କୁ ଇଙ୍ଗିତ କରାଇ ସଖୀ ବିରହିଣୀ ଶ୍ରୀରାଧାଙ୍କୁ ପୁଣି କହୁଛି – ହେ ସଖି ! ତୁମ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ଆଡ଼କୁ ଥରେ ମାତ୍ର ଚାହିଁ ଦେଖ ।

*[ ରାମକେରୀ ରାଗେଣ ଗୀୟତେ । ଯତିତାଳାଭ୍ୟାଂ ଗୀୟତେ । ଗୀତ-୪ ]*

**ଚନ୍ଦନଚର୍ଚ୍ଚିତନୀଳକଳେବରପୀତବସନବନମାଳୀ**
**କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗସ୍ମିତଶାଳୀ ।**
**ହରିରିହ ମୁଗ୍ଧବଧୂନିକରେ, ବିଳାସିନି ବିଳସତି କେଳିପରେ । ଧ୍ରୁବଂ । (କ)**

ପଦ୍ୟ – ନୀଳକଳେବରେ ଶୋହେ ହରିଚ଼ନ୍ଦନ । କଟୀତଟେ ପୀତପଟ ପରିଧାପନ ॥
ମଣ୍ଡିତ ଗଣ୍ଡଯୁଗଳେ ମଣିକୁଣ୍ଡଳ । ଲୀଳାଏ ଢାଳନ୍ତେ ଶୋହେ ମୁଖମଣ୍ଡଳ ॥
ବିଳାସିନୀବୃନ୍ଦ ମଧ୍ୟେ କରନ୍ତି କେଳି । ବଜାଇ ସୁସ୍ୱରେ ବେଣୁ ଶ୍ରୀବନମାଳୀ ॥

ଗଦ୍ୟ – ହେ ରାଧିକେ, ଶ୍ରୀକୃଷ୍ଣଙ୍କ ନୀଳଶରୀରରେ ଚନ୍ଦନ ଆଲିପ୍ତ ହୋଇଛି । ସେ ପୀତବସନ ପରିଧାନ କରିଛନ୍ତି । ତାଙ୍କର କଣ୍ଠରୁ ପାଦ ପର୍ଯ୍ୟନ୍ତ ବନମାଳା ପ୍ରଲମ୍ବିତ ହୋଇଛି । ଗୋପଯୁବତୀମାନଙ୍କ ଗହଣରେ କ୍ରୀଡ଼ା କରୁଥିବାରୁ କର୍ଣ୍ଣରେ ଥିବା ମଣିନିର୍ମିତ କୁଣ୍ଡଳ ଯୁଗଳର ଶୋଭାରେ ତାଙ୍କ ଗଣ୍ଡସ୍ଥଳ ଶୋଭାପାଉଛି । ମୁଖମଣ୍ଡଳରେ ଈଷତ୍ ହାସ୍ୟରେଖା ଫୁଟିଉଠିଥିବାରୁ, ସେହି ମନୋହର ଗଣ୍ଡଯୁଗଳର ଆଭାରେ ତାଙ୍କ ମୁଖଶୋଭା ଦରହାସରେ ପ୍ରସ୍ଫୁରିତ ହୋଇଛି । ହେ ବିଳାସିନୀ ରାଧିକେ, ସେହି ନାଗର ଶିରୋମଣି ଶ୍ରୀକୃଷ୍ଣ କେଳିରସରେ ମଗ୍ନ। ପ୍ରଣୟିନୀ ଗୋପଯୁବତୀମାନଙ୍କ ମଧ୍ୟରେ କ୍ରୀଡ଼ାବିଳାସରେ ମାତିଛନ୍ତି ।

**ପୀନପୟୋଧରଭାରଭରେଣ ହରିଂ ପରିରଭ୍ୟ ସରାଗମ୍**
**ଗୋପବଧୂରନୁଗାୟତି କାଚିଦୁଦଞ୍ଚିତପଞ୍ଚମରାଗମ୍ । (ଖ)**

ପଦ୍ୟ – କେବଣ କାମିନୀ କୁଚ଼ଭରେଣ ଭାରି । ଆଲିଙ୍ଗନ କରିବାକୁ ସରାଗ କରି ।।
କେବଣ ଗୋପିନୀ ଗାଏ ପଞ୍ଚମ ସ୍ୱରେ । କର ଦେଇ କହି ଲୋଡେ ଶ୍ରୁତି ମୂଳରେ ।।

ଗଦ୍ୟ– ହେ ରାଧିକେ, ଉନ୍ନତ କୁଚ଼କଳସଭାରରେ ଅବନମିତା କୌଣସି ଏକ ଗୋପଯୁବତୀ ଶ୍ରୀକୃଷ୍ଣଙ୍କୁ ଅନୁରାଗର ସହିତ ଆଲିଙ୍ଗନ କରି, ତାଙ୍କ ଗାନ ସହିତ ସ୍ୱର ମିଳାଇ ପଞ୍ଚମତାନରେ (ଉଚ୍ଚସ୍ୱରରେ) ଗାନକରୁଛି ।

କାପି ବିଳାସବିଲୋଲବିଲୋଚ଼ନଖେଳନଜନିତମନୋଜମ୍
ଧ୍ୟାୟତି ମୁଗ୍‌ଧବଧୂରଧିକଂ ମଧୁସୂଦନବଦନସରୋଜମ୍ । (ଗ)

ପଦ୍ୟ – କେବଣ ବିଳାସିନୀ ବିଲୋଳଲୋଚ଼ନ । ଢଳିଣ ଚାହାନ୍ତେ କି ଏ ଉଦେ ମଦନ ।।
କୃଷ୍ଣମୁଖସରୋଜେ ଧାଉଛି ତରୁଣୀ । ହରଷେ ଲାବଣ୍ୟ କୋଟି ମଦନ ଜିଣି ।।

ଗଦ୍ୟ– ହେ ରାଧିକେ, କେଉଁ ଗୋପନାଗରୀ ବିଳାସରସରେ ମଗ୍ନା ହୋଇ, ଚଞ୍ଚଳନେତ୍ର ଯୁଗଳର କଟାକ୍ଷରେ କାମଭାବ ସଞ୍ଚାର କରାଇ, ମଧୁସୂଦନ ଶ୍ରୀକୃଷ୍ଣଙ୍କ ବଦନସରୋଜରୁ ମଧୁ ଝରିପଡୁଛି କି ଭାବି, ଖଞ୍ଜନ ନୟନକୁ ଖେଳାଇବାରେ ଲାଗିଛି । ଅର୍ଥାତ୍ ନିଜର ଚଞ୍ଚଳ ନେତ୍ର ଯୁଗରେ ଶ୍ରୀକୃଷ୍ଣଙ୍କ ପଦ୍ମମୁଖକୁ ଚାହିଁ ରହିଛି ।

କାପି କପୋଳତଳେ ମିଳିତା ଲପିତୁଂ କିମପି ଶ୍ରୁତିମୂଳେ
ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈରନୁକୂଳେ । (ଘ)

ପଦ୍ୟ – କେବଣ କାମିନୀ କୃଷ୍ଣକପୋଳ ତଳେ ।
ମୁଖ ଦେଇ କହି ଲୋଡେ ଶ୍ରବଣ ମୂଳେ ।।
ଦେଖି ଚାରୁଗଣ୍ଡଯୁଗ ପୁଲକ ହୋଇ । ଚୁମ୍ବନ ଦେଲାକ କିଛି ନ ପାରି କହି ।।
ରମଣୀ ଚୁମ୍ବନ୍ତେ କୃଷ୍ଣ ଚଞ୍ଚଳ ମନୁ । ପୁଲକ ହୋଇଲା ଲୋମ ସକଳ ତନୁ ।।

ଗଦ୍ୟ – ହେ ରାଧିକେ, କୌଣସି ସୁନ୍ଦରୀ ନିତମ୍ବିନୀ ଶ୍ରୀକୃଷ୍ଣଙ୍କ କର୍ଣ୍ଣରେ ଗୋପନୀୟ କେଳିରହସ୍ୟ କହିବା ଛଳରେ, ରସାନୁକୂଳ ଅବସ୍ଥାରେ ପୁଲକିତ ହୋଇଉଠିଥିବା ତାଙ୍କର ମନୋଜ୍ଞ ଗଣ୍ଡରେ ଚୁମ୍ବନ ଦେଇ ଉଲ୍ଲସିତ ହୋଇଉଠୁଛି । ଅର୍ଥାତ୍ ସଖୀମାନଙ୍କ ଗହଣରେ ସହସା ଚୁମ୍ବନ ଦେବାକୁ ଲଜ୍ଜା ଅନୁଭବ କରି, ରହସ୍ୟ କଥା କହିବା ଛଳରେ, ପ୍ରାଣପ୍ରିୟଙ୍କ କର୍ଣ୍ଣମୂଳରେ ମୁଖରଖି, ତାଙ୍କର ପୁଲକିତ ଗଣ୍ଡରେ ଚୁମ୍ବନଦାନ କରି ରସାନୁକୂଳ ଅବସ୍ଥା ସୃଷ୍ଟି କରିଛି ।

କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାଜଳକୂଳେ
ମଞ୍ଜୁଳବଞ୍ଜୁଳକୁଞ୍ଜଗତଂ ବିଚ଼କର୍ଷ କରେଣ ଦୁକୂଳେ । (ଙ)

ପଦ୍ୟ – କେଳୀରସ ଯମୁନାକୂଳର ବିପିନେ । କେଉଁ ଗୋପୀ ଓଟାରେ କୃଷ୍ଣର ବସନେ ।।
ନିକୁଞ୍ଜ ବେତସ ବନ ଗହନେ ଯିବା । ବିବିଧ ପ୍ରକାରେ କାମକ୍ରୀଡ଼ା କରିବା ।।

ଗଦ୍ୟ – ହେ ରାଧିକେ, କେଳିକଳାକୌତୂହଳରେ କେହି ଗୋପୀ ଶ୍ରୀକୃଷ୍ଣଙ୍କ ସହିତ ଏକାନ୍ତରେ ମିଳିତ ହେବାପାଇଁ, ଯମୁନାକୂଳରେ ଥିବା ମଞ୍ଜୁଳ ବେତସକୁଞ୍ଜକୁ ଆକର୍ଷଣ କରିନେବା ଉଦ୍ଦେଶ୍ୟରେ, ନିଜ କରଯୁଗଳରେ ତାଙ୍କ ପିନ୍ଧାବସନକୁ ଧରି ଭିଡ଼ିନେଉଛି । ଅର୍ଥାତ୍ କୌଣସି ଗୋପୀ ରତିରସରେ ଉତ୍କଣ୍ଠିତା ହୋଇ ଏକାନ୍ତରେ ପ୍ରିୟସଙ୍ଗମ କାମନା କରି ପ୍ରଣୟୀଙ୍କୁ ମନୋଜ୍ଞ ବେତସ କୁଞ୍ଜକୁ ଭିଡ଼ି ନେବାକୁ ଚେଷ୍ଟା କରୁଛି ।

କରତଳତାଳତରଳବଳୟାବଳିକଳିତକଳସ୍ୱନବଂଶେ
ରାସରସେ ସହନୃତ୍ୟପରା ହରିଣା ଯୁବତିଃ ପ୍ରଶଶଂସେ । (ଚ଼)

ପଦ୍ୟ – ସକଳ ବାମାମଣ୍ଡଳୀ ମଧ୍ୟେ ମୁରାରି । ରାସକ୍ରୀଡ଼ା ରସନୃତ୍ୟ କରନ୍ତି ହରି ।।
କରତାଳ ଶବଦରେ କିଙ୍କିଣୀ ଧ୍ୱନି । ମଞ୍ଜି ବେଣୁସ୍ୱରେ ତାନ ଏକଇ ଜାଣି ।।
ପ୍ରଶଂସନ୍ତି ଯୁବତୀକୁ କୃଷ୍ଣ ଅନାଇଁ । ବିବିଧ ପ୍ରକାରେ ଚାଟୁ ବଚ଼ନ କହି ।।

ଗଦ୍ୟ – ହେ ରାଧେ, କରତାଳି ଦେଇ କୌଣସି ଗୋପୀ ରାସରସରେ ବିମୁଗ୍ଧା ହୋଇ ବଂଶୀଧ୍ୱନିର ତାଳେ ତାଳେ ନୃତ୍ୟ କରୁଥିବା ସମୟରେ, ତା'ର କଙ୍କଣ ରୁଣୁଝୁଣୁ ହୋଇ ବାଜିଉଠୁଛି । ସେହି ମୁଗ୍ଧା ଗୋପଯୁବତୀର ଆବେଗଭରା ନୃତ୍ୟରେ ମୁଗ୍ଧ ହୋଇ ଶ୍ରୀକୃଷ୍ଣ ତାହାକୁ ପ୍ରଶଂସା କରୁଛନ୍ତି ।

ଶ୍ଲିଷ୍ୟତି କାମପି ଚୁମ୍ବତି କାମପି ରମୟତି କାମପି ରାମାମ୍
ପଶ୍ୟତି ସସ୍ମିତଚାରୁତରାମପରାମନୁଗଚ୍ଛତି ବାମାମ୍ । (ଛ)

ପଦ୍ୟ – କେବଣ ନାରୀକି କୃଷ୍ଣ ଅପାଙ୍ଗେ ଚାହିଁ । କାହାକୁ ନିବିଡେ ଆଲିଙ୍ଗନ କରଇ ।।
କାହାର ସରୋଜମୁଖେ ଦେଇ ଚୁମ୍ବନ । କେଉଁ ଯୁବତୀକୁ କହେ ହାସ୍ୟ ବଚ଼ନ ।।
କେବଣ ନାରୀକି କୃଷ୍ଣ ରମଣ କରି । ସକଳ ରମଣୀ ରାସଲୀଳା ଏପରି ।।
କାହା ପଛେ ପଛେ ଗୋଡ଼ାବନ୍ତି ମୁରାରି । କାହାକୁ ଭିଡ଼ନ୍ତି ପାଶେ କରକୁ ଧରି ।।

ଗଦ୍ୟ – ହେ ସଖୀ ରାଧିକେ ! ଦେଖ, ଏହି ରାସରସରେ ଶ୍ରୀକୃଷ୍ଣ କେଉଁ ଗୋପୀକି ଆଲିଙ୍ଗନ କରୁଛନ୍ତି, କାହାର ପୁଲକିତ ଗଣ୍ଡରେ ଚୁମ୍ବନ ଦେଉଛନ୍ତି, କାହା ସହିତ ଆନନ୍ଦରେ କ୍ରୀଡ଼ା କରୁଛନ୍ତି । ଆଉ କେଉଁ ଯୁବତୀ ଆଡ଼କୁ ମନୋଜ୍ଞ ସହାସ୍ୟ ବଦନରେ ଚାହିଁ ତା'ରି ପଛେ ପଛେ ଚାଲିଛନ୍ତି, ଅର୍ଥାତ୍ ଏହି ଗୋପିମଣ୍ଡଳୀ ମଧ୍ୟରେ ଶ୍ରୀକୃଷ୍ଣ ବିବିଧ ପ୍ରକାର କୀଡ଼ା ପ୍ରଦର୍ଶନ କରି ସେହି ବ୍ରଜବାମାଙ୍କୁ ପ୍ରଫୁଲ୍ଲିତ କରାଉଛନ୍ତି ।

ଶ୍ରୀଜୟଦେବଭଣିତମିଦମଦ୍ଭୁତକେଶବକେଳିରହସ୍ୟମ୍
ବୃନ୍ଦାବନବିପିନେ ଲଳିତଂ ବିତନୋତୁ ଶୁଭାନି ଯଶସ୍ୟମ୍ । (ଜ)

ପଦ୍ୟ – ଶ୍ରୀଜୟଦେବ କବିଙ୍କ ଗୀତସରସ । କେଶବ ଗୋପରମଣୀ କେଳିରହସ୍ୟ ।।
ବୃନ୍ଦାବନ ମନୋଜ୍ଞ ବିପିନ କୁଞ୍ଜରେ । ଏ' ରସ ପ୍ରସରୁ ସର୍ବ ସୁଜ୍ଞଜନରେ ।।

ଗଦ୍ୟ– ଶ୍ରୀ ଜୟଦେବ କବିଙ୍କର ଏହି ଅଦ୍‌ଭୁତ କେଶବକେଳିରହସ୍ୟମୟ ଗୀତଗୋବିନ୍ଦ ସର୍ବତ୍ର ପରିବ୍ୟାପ୍ତ ହେଉ । ବୃନ୍ଦାବନର ସେହି ମନୋଜ୍ଞ କେଳିବିପିନରେ ଶ୍ରୀକୃଷ୍ଣଙ୍କର ଲଳିତ, ଶୁଭ ତଥା ଯଶସ୍କର କ୍ରୀଡ଼ାରସ ରସିକ ପାଠକମାନଙ୍କର ଚିତ୍ତବିନୋଦନ କରୁ ।

ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-
ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈରନଙ୍ଗୋତ୍ସବମ୍ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍‌ଧୋ ହରିଃ କ୍ରୀଡ଼ତି ।୧୧।

ପଦ୍ୟ– ନାନା ମନୋରଞ୍ଜନେ ଆଦିତ୍ୟ ପ୍ରକାଶ । ଶ୍ୟାମଳ କୋମଳ ତନୁ ମଦନ ବେଶ ॥
ସ୍ୱଚ୍ଛନ୍ଦେ ନିର୍ଭର ଘେନି ଯୁବତୀ ଯୂଥ । ପୁନଃ ପୁନଃ ଆଲିଙ୍ଗନେ ମଦନେ ମତ୍ତ ॥
ମୂର୍ତ୍ତିମନ୍ତ ହୋଇଅଛି ଶୃଙ୍ଗାରକଳା । ମଧୁମାସେ କାମୋତ୍ସବ କୃଷ୍ଣର ଲୀଳା ॥
ବସନ୍ତ ବର୍ଣ୍ଣନା ଏହୁ ରହସ୍ୟ ଲୀଳା । ରାଧିକା ଅଗ୍ରତେ ସହଚରୀ କହିଲା ॥

ଗଦ୍ୟ – ହେ ସଖି ! ପ୍ରେମ ତଥା ଅନୁରାଗର ବଶବର୍ତ୍ତୀ ହୋଇ ସମଗ୍ର ପୃଥିବୀ ଏବଂ ଗୋପୀଜନମାନଙ୍କୁ ଆନନ୍ଦିତ କରି , ନୀଳକମଳ ସଦୃଶ କାନ୍ତିମାନ୍ ଓ କୋମଳଅଙ୍ଗ ଯୁକ୍ତ କାମଦେବଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ବ୍ରଜକାମିନୀମାନଙ୍କ ଅଙ୍ଗ ସଙ୍ଗ ଓ ଅନ୍ତରକୁ ପୁଲକିତକରି, ମୂର୍ତ୍ତିମାନ୍ ଶୃଙ୍ଗାରରସ ସଦୃଶ କ୍ରୀଡ଼ା କରୁଛନ୍ତି । ଶ୍ରୀକୃଷ୍ଣ ବ୍ରଜାଙ୍ଗନାମାନଙ୍କୁ ଆଲିଙ୍ଗନ ଚୁମ୍ବନଦାନ ଦେଇ ଏହି ବସନ୍ତକାଳୀନ ବୃନ୍ଦାବନକୁ ରସାଣିତ କରୁଛନ୍ତି ।

ଅଦ୍ୟୋତ୍‌ସଙ୍ଗବସଦ୍‌ଭୁଜଙ୍ଗକବଳକ୍ଲେଶାଦିବେଶାଚଳଂ-
ପ୍ରାଲେୟପ୍ଲବନେଚ୍ଛୟାନୁସରତି ଶ୍ରୀଖଣ୍ଡଶୈଳାନିଳଃ ।
କିଂ ଚ ସ୍ନିଗ୍‌ଧରସାଳମୌଳିମୁକୁଳାନ୍ୟାଲୋକ୍ୟ ହର୍ଷୋଦୟା-
ଦୁନ୍ମୀଲନ୍ତି କୁହୂଃ କୁହୂରିତିକଳୋତ୍ତାଳାଃ ପିକାନାଂ ଗିରଃ ।୧୨।

ପଦ୍ୟ – ମଳୟ ପବନ ବିଷ-ଅନଳ ସହି । ଦେଖ ସଖି ! ହିମାଚଳେ ଧୀରେ ଗମଇ ॥
ଆମ୍ବଉଳ ଅଶୋକ ବକୁଳ ଫୁଲେ । ପ୍ରମୁଦିତ ହୋଇ ପିକ କୁହୁତାନରେ ॥
ତା' ସଙ୍ଗେ ଚଳଇ ଗାଇ ଆନନ୍ଦେ ଗୀତ ।
ଏ ଶୋଭା ବିଲୋକି କେ ନୋହେ ବିମୋହିତ ॥
ବିରହିଣୀ ଜନ ତେଣୁ ସନ୍ତାପାନଳେ । ଅସ୍ଥିର ହୁଅନ୍ତି ସଖି ! ଦେଖ ଆକୁଳେ ॥
ଏ କାଳେ ତୋତେ ବରଜି ଶ୍ରୀଗୋପୀନାଥ । ଗୋପୀଜନମନ ରଞ୍ଜି ହେଲେ ଉନ୍ମତ୍ତ ॥
ବସନ୍ତବର୍ଣ୍ଣନା ଏହୁ ରହସ୍ୟଲୀଳା । ରାଧିକା ଅଗ୍ରତେ ସହଚରୀ କହିଲା ॥
ଶ୍ରୀହରି-ଚରଣ ପଦ୍ମପରାଗ ଆଶେ । ଧରଣୀଧରର ମନ ମଧୁପ କି ସେ ॥

ଗଦ୍ୟ – ମଳୟପର୍ବତରେ ରହିଥିବା ଚନ୍ଦନବୃକ୍ଷସ୍ଥିତ ସର୍ପମାନଙ୍କ ନିଃଶ୍ୱାସ ପବନରେ ଅତ୍ୟନ୍ତ କ୍ଳେଶ ସହ୍ୟ କରିନପାରି ମଳୟ ପବନ ହିମାଳୟର ହିମଯୁକ୍ତ ଶୀତଳ ଜଳରେ ସ୍ନାନ କରିବା ନିମିତ୍ତ ଆନନ୍ଦମନରେ ସେଠାକୁ ଗମନ କରୁଛି । ମଳୟପବନର ପ୍ରସରଣ (ଗମନ) ସମୟରେ ଉତ୍ସାହିତ ହୋଇ ଏବଂ ଆମ୍ର ବକୁଳ ତଥା ଅଶୋକ ବୃକ୍ଷରେ ଜାତହୋଇଥିବା ବଉଳ ଓ ପୁଷ୍ପସମୂହର ବିକାଶରେ ଆନନ୍ଦବିହ୍ୱଳିତ କୋକିଳମାନେ 'କୁହୁ କୁହୁ' ତାନରେ ସତେ ଯେପରି, ମଧୁର ଗୀତରେ ଦିଗ-ବିଦିଗକୁ ମୁଖରିତ କରିଦେଉଛନ୍ତି । (ବସନ୍ତ ପବନର ପ୍ରବାହ, ଆମ୍ର ବଉଳ-ବକୁଳ ଓ ଅଶୋକ ପୁଷ୍ପର ବିକାଶ ତଥା କୋକିଳର କୁହୁତାନ ବିରହିଣୀମାନଙ୍କ ପକ୍ଷରେ ଅତ୍ୟନ୍ତ ଅସହ୍ୟ ହୋଇଉଠିଛି) ।

ଏହି ସମୟରେ ଶ୍ରୀକୃଷ୍ଣ ଗୋପକାମିନୀମାନଙ୍କ ଗହଣରେ କାମବଶ ହୋଇ ନୃତ୍ୟ କରୁଥିବାର ଦେଖି ତୁମ ହୃଦୟରେ ଯେ କି ଭାବାନ୍ତର ସୃଷ୍ଟି ହେଉ ନଥିବ, ତାହା ମୁଁ ବେଶ୍ ଅନୁଭବ କରିପାରୁଛି । ହେ ସଖି, ଏ ଦୃଶ୍ୟ ତୁମେ ଦେଖି ପାରୁଛ ତ ?

ଇତି ଶ୍ରୀ ଉତ୍କଳୀୟ କବି ଶ୍ରୀଜୟଦେବ କୃତେ ଶ୍ରୀଗୀତଗୋବିନ୍ଦେ
ସାମୋଦଦାମୋଦରୋ ନାମ ପ୍ରଥମଃ ସର୍ଗଃ । *

□□□

* ରସମଞ୍ଜରୀ ଓ ରସିକପ୍ରିୟା ଟୀକା ସମନ୍ୱିତ ଗୀତଗୋବିନ୍ଦ ପୁସ୍ତକରେ ଏହି ପୁଷ୍ପିକା ପୂର୍ବରୁ ଗୋଟିଏ ଶ୍ଳୋକ ରହିଛି । ଏହି ଶ୍ଳୋକଟି ଓଡ଼ିଶାର ପୋଥିମାନଙ୍କରେ ପରିଲକ୍ଷିତ ହୁଏନାହିଁ ।

''ରାସୋଲ୍ଲାସଭରେଣ ବିଭ୍ରମଭୃତାମାଭୀରବାମଭ୍ରୁବା
ମଭ୍ୟର୍ଣ୍ଣେ ପରିରଭ୍ୟ ନିର୍ଭରମୁରଃ ପ୍ରେମାନ୍ଧୟା ରାଧୟା ।
ସାଧୁ ତ୍ୱଦ୍‌ବଦନଂ ସୁଧାମୟମିତି ବ୍ୟାହୃତ୍ୟ ଗୀତସ୍ତୁତି-
ବ୍ୟାଜାଦୁଦ୍‌ଭଟଚୁମ୍ବିତଃ ସ୍ମିତମନୋହାରୀ ହରିଃ ପାତୁ ବଃ'' ।

# ଦ୍ୱିତୀୟସର୍ଗ

**ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ**
**ବିଗଳିତନିଜୋତ୍କର୍ଷାଦୀର୍ଷ୍ୟାବେଶନ ଗତାନ୍ୟତଃ ।**
**କ୍ୱଚିଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ**
**ମୁଖରଶିଖରେ ଲୀନା ଦୀନାପ୍ୟୁବାଚ ରହଃ ସଖୀମ୍ ।୧।**

ପଦ୍ୟ – ଶୁଣ ସୁଜନେ ହୋଇ ସାବଧାନ । କହିଲା ସଜନୀ ଯେତେ ବଚନ ।।
ଶୁଣି ରାଧିକା ଅତି ତାପ ମନେ । ବିହରଇ ଘନଘୋର ବିପିନେ ।।
ଅତି ଅନୁରାଗେ, ଧରିଅଛି ତା'ର ହୃଦୟଭାଗେ ।।
ଭ୍ରମି ଭ୍ରମନ୍ତେ ତନୁ ତେଜ ନାଶ । କେବଣ ହିଁ ଲତାକୁଞ୍ଜେ ପ୍ରବେଶ ।।
ଭ୍ରମର ମଣ୍ଡଳୀ ତଥି ଉପରେ । ମୁଖରାବ ଧ୍ୱନି କାନନେ ସ୍ଫୁରେ ।।
ତା' ଦେଖି ସୁମୁଖୀ, ଅତି ଦୁଃଖେ କହେ ଶୁଣ ଗୋ ସଖି ।।

ଗଦ୍ୟ– ଶ୍ରୀରାଧା ସେ ପର୍ଯ୍ୟନ୍ତ ନିଜକୁ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ପ୍ରଣୟିନୀ ରୂପେ ମନେକରିଥିବାରୁ, ତାହାଙ୍କୁ (ଶ୍ରୀକୃଷ୍ଣଙ୍କୁ) ଅନ୍ୟ ସାଧାରଣ ଗୋପକାମିନୀଙ୍କ ଗହଣରେ ନୃତ୍ୟକରୁଥିବାର ଲକ୍ଷ୍ୟକରି ଅତ୍ୟନ୍ତ ମର୍ମାହତ ହୋଇଥିଲେ । କାରଣ ତାଙ୍କ (ରାଧାଙ୍କ) ଉତ୍କର୍ଷତାରେ ଆଘାତ ଲାଗିଥିବାରୁ, ସେ ଈର୍ଷାବଶତଃ ସଖୀଙ୍କ ସହିତ ଅନ୍ୟତ୍ର ଚାଲିଯାଇଥିଲେ । ରାଧିକା ଶ୍ରୀକୃଷ୍ଣଙ୍କ ରାସଲୀଳା ସ୍ଥାନରୁ ଚାଲିଯାଇ, ଭ୍ରମରମାନଙ୍କ ମଧୁମୟ ଗୁଞ୍ଜନରେ ମୁଖରିତ କୌଣସି ଗୋଟିଏ ଲତାକୁଞ୍ଜରେ ଆତ୍ମଗୋପନ କରିବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଦୁଃଖିତା ହୋଇ ପ୍ରିୟ ସହଚରୀ ଆଗରେ ନିଜର ମନୋବେଦନା ପ୍ରକାଶ କରି କହିବାକୁ ଲାଗିଲେ ।

*[ ଗୁର୍ଜରୀ ରାଗେଣ ଗୀୟତେ । ଯତି ତାଳେ ଚ ଗୀୟତେ । ଗୀତ – ୧ ]*

**ସଞ୍ଚରଦଧରସୁଧାମଧୁରଧ୍ୱନିମୁଖରିତମୋହନବଂଶମ୍**
**ଚଳିତଦୃଗଞ୍ଚଳଚଞ୍ଚଳମୌଳିକପୋଳବିଲୋଳବତଂସମ୍ ।**
**ରାସେ ହରିମିହ ବିହିତବିଳାସମ୍**
**ସ୍ମରତି ମନୋ ମମ କୃତପରିହାସମ୍ । ଧ୍ରୁବମ୍ । (କ)**

ପଦ୍ୟ– ଦେଖ ସଖି । ହରି ଏତେ ନିର୍ଦ୍ଦୟ । କ୍ରୀଡ଼ଇ ଘେନି ଗୋପଜାୟା ଚୟ ।
ମୋର ବିହୀନେ ରାସକେଳି ରସ । କରଇ ନାନାପ୍ରକାର ବିଳାସ ।

ନାହିଁ ମୋର ଆଶ, ମୋ' ମନ ସୁମରଇ କ୍ରୀଡ଼ାରସ ॥
ଅମୀୟ ଅଧରେ ବେଣୁ ମଧୁର । ଚଳିତ ଲୋଚନେ ଚଞ୍ଚଳ ଶିର ।
କପୋଳେ ଅବତଂସ ପୁଷ୍ପମାନ । ଆଲୋଳ ହୁଅନ୍ତେ ଅତି ଶୋଭନ ।
ତା' ପ୍ରସନ୍ନ ମୁଖ, ଦେଖି କାମିନୀ ହରୁଛନ୍ତି ଦୁଃଖ ॥

ଗଦ୍ୟ – ରେ ସଖି ! ମୁଁ ସିନା ଏଠାରେ ଆତ୍ମଗୋପନ କରି ବସିରହିଛି, କିନ୍ତୁ ମୋ' ମନ ସେହି ମଦନମୋହନ ଶ୍ରୀକୃଷ୍ଣଙ୍କ ରୂପ ମାଧୁରୀକୁ ସ୍ମରଣ କରୁଛି । ଯେଉଁ ଶ୍ରୀକୃଷ୍ଣ ଗୋପକାମିନୀଙ୍କ ଗହଣରେ ହାସ, ବିଳାସ ଓ ପରିହାସପୂର୍ବକ କେଳିରସ ଅର୍ଥାତ୍ ରାସରସରେ ମଗ୍ନ ହୋଇଛନ୍ତି, ଯାହାଙ୍କର ଅଧର ଓଷ୍ଠରୁ ଝରିପଡୁଥିବା ମଧୁର ସୁଧାରସରେ ସିକ୍ତ ହୋଇ ବଂଶୀରୁ ମନୋଜ୍ଞ ସ୍ୱର ଝଙ୍କୃତ ହେଉଛି, ସେହି ବଂଶୀବାଦନ ସମୟରେ ଯାହାଙ୍କର ନୟନାଞ୍ଚଳ ଚଞ୍ଚଳ ହେବା ସଙ୍ଗେ ସଙ୍ଗେ ଶିରରେ ଥିବା ମୁକୁଟ କମ୍ପିତ ହେଉଛି ଏବଂ ଯେଉଁ କୃଷ୍ଣ ବିଳାସରସମତ୍ତ ହୋଇ ନୃତ୍ୟ କରୁଥିବା ସମୟରେ ଯାହାଙ୍କ କର୍ଣ୍ଣଯୁଗଳରେ ଥିବା ମକର କୁଣ୍ଡଳ ଆନ୍ଦୋଳିତ ହୋଇ ଗଣ୍ଡଯୁଗଳର କାନ୍ତି ବର୍ଦ୍ଧନ କରୁଛି, ସେହି ମୋହନ ମୁରଲୀଧାରୀ ଶ୍ରୀକୃଷ୍ଣଙ୍କ ବଦନଚନ୍ଦ୍ରମାକୁ ମୋର ମନରୂପକ ଚକୋର ଅହରହ ସ୍ମରଣ କରୁଛି ।

ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶମ୍ ।
ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶମ୍ । (ଖ)

ପଦ୍ୟ– ମୟୂରପୁଚ୍ଛର ଚନ୍ଦ୍ରିକା ମାଳୀ । କୁଟିଳ କେଶେ ବେଢ଼ାଇ ମଣ୍ଡଳୀ ॥
ଯେସନେ ନୀଳଜଳଦର ମଧ୍ୟେ । ଇନ୍ଦ୍ରଚାପ କି ସେ ହୋଇଛି ଉଦେ ॥
ତା' ମୋହନ ଚୂଳ, ଚାହିଁଲେ ଚତୁରୀ ଚିତ୍ତ ଆକୁଳ ॥

ଗଦ୍ୟ – ନାନା ଚିତ୍ରବିଚିତ୍ର ବର୍ଣ୍ଣରେ ପରିଶୋଭିତ ମୟୂରଚନ୍ଦ୍ରିକାରେ ତାଙ୍କର କେଶପାଶ ବଳୟିତ ହୋଇଛି । ତାକୁ ଦେଖି ମନେହେଉଛି, ସତେ ଯେପରି, ଅନେକ ଇନ୍ଦ୍ରଧନୁରେ ଅନୁରଞ୍ଜିତ ହୋଇ ମେଘମାଳା ଶୋଭାପାଉଛି କି ? ଅର୍ଥାତ୍ ନାନା ବର୍ଣ୍ଣରେ ଚିତ୍ରିତ ମୟୂରପୁଚ୍ଛଯୁକ୍ତ କେଶପାଶ ଦ୍ୱାରା ଇନ୍ଦ୍ରଧନୁରେ ମଣ୍ଡିତ ନୀଳଜଳଦମଣ୍ଡଳ ପରି ମୋର ପ୍ରିୟ କୃଷ୍ଣଚନ୍ଦ୍ର ଶୋଭାପାଉଛନ୍ତି । ମୁଁ ସେହି ମନୋଜ୍ଞ ମୁଖମଣ୍ଡଳକୁ କୌଣସିମତେ ପାଶୋରି ଦେଇ ପାରୁନାହିଁ ।

ଗୋପକଦମ୍ବନିତମ୍ବବତୀମୁଖଚୁମ୍ବନଲମ୍ଭିତଲୋଭମ୍ ।
ବନ୍ଧୁଜୀବମଧୁରାଧରପଲ୍ଲବମୁଲ୍ଲସିତସ୍ମିତଶୋଭମ୍ । (ଗ)

ପଦ୍ୟ – ଗୋପ-ନାୟିକା ନିତମ୍ବିନୀବୃନ୍ଦ । ବଦନ ବିକଶିତ ଅରବିନ୍ଦ ।
ଚୁମ୍ବନ ଦେବାରୁ ଲୋଭେ ସୁନ୍ଦରୀ । ବଳିଛି ମଧୁରାଧର ମୁରାରି ।
ବନ୍ଧୁକର ଆଭା, ଉଲ୍ଲସିତ ଦରହାସରେ ଶୋଭା ॥

ଗଦ୍ୟ— ହେ ସଖି, ଗୋପାଳମାନଙ୍କ ବଧୂ ଅର୍ଥାତ୍ ଗୋପିନୀମାନଙ୍କର ମୁଖମଣ୍ଡଳକୁ ଚୁମ୍ବନ କରିବାରେ ଶ୍ରୀକୃଷ୍ଣ ଅତ୍ୟନ୍ତ ଲୋଭାସକ୍ତ ହୋଇଉଠିଛନ୍ତି । ବନ୍ଧୁଲିଫୁଲ ପରି ଗାଢ଼ ରକ୍ତବର୍ଣ୍ଣ ତାଙ୍କର ଅଧର-ପଲ୍ଲବରେ ଉଲ୍ଲାସଜନିତ ମନ୍ଦ ମନ୍ଦ ହାସ ଶୋଭାପାଉଛି । ସେହି ସ୍ମିତହାସ୍ୟଶାଳୀ ଶ୍ରୀକୃଷ୍ଣଙ୍କୁ ପାଇବା ପାଇଁ ମୋ' ମନ ବ୍ୟାକୁଳ ହେଉଛି ।

**ବିପୁଳପୁଲକଭୁଜପଲ୍ଲବବଳୟିତବଲ୍ଲବଯୁବତିସହସ୍ରମ୍ ।**
**କରଚରଣୋରସି ମଣିଗଣଭୂଷଣକିରଣବିଭିନ୍ନତମିସ୍ରମ୍ । (ଘ)**

ପଦ୍ୟ — ସହସ୍ରେ ବ୍ରଜନାରୀ କରି କୋଳ । ପୁଲକିତ ଅତି ଭୁଜଯୁଗଳ ।
କରେ କଙ୍କଣ ହୃଦରେ ଭୂଷଣ । ପାଦେ ନୂପୁର ନାନା ମଣିଗଣ ।
ଏଁ ଜ୍ୟୋତି ପ୍ରକାଶ, କୁଞ୍ଜ-ସଦନେ ଅନ୍ଧକାର ନାଶ ।।

ଗଦ୍ୟ — ଆନନ୍ଦରେ ପୁଲକିତ ହୋଇଥିବା ତାଙ୍କର ଭୁଜପଲ୍ଲବଦ୍ୱାରା ସେ ଶତସହସ୍ର ଗୋପକାମିନୀଙ୍କୁ ମଣ୍ଡଳାକାରରେ ଆଲିଙ୍ଗନ କରୁଛନ୍ତି । ହସ୍ତ, ପାଦ ତଥା ବକ୍ଷଦେଶରେ ଧାରଣ କରିଥିବା ରତ୍ନ ଆଭୂଷଣ ଦ୍ୱାରା ବିଚ୍ଛୁରିତ ହେଉଥିବା ତେଜପୁଞ୍ଜରେ ବନଗହନର ଅନ୍ଧକାର ବିଦୂରିତ ହେଉଛି । ଏମନ୍ତ ଶୋଭାଶାଳୀ ଶ୍ରୀକୃଷ୍ଣଙ୍କୁ ପାଇବା ପାଇଁ ମୋ' ମନ ଅଥୟ ହେଉଛି ।

**ଜଳଦପଟଳଚଳଦିନ୍ଦୁବିନିନ୍ଦକଚନ୍ଦନତିଳକଲଲାଟମ୍ ।**
**ପୀନପୟୋଧରପରିସରମର୍ଦ୍ଦନନିର୍ଦ୍ଦୟହୃଦୟକପାଟମ୍ । (ଙ)**

ପଦ୍ୟ — ଚଳନ୍ତେ ଅସିତ ଘନ ପଟଳ । ଯେସନେ ପ୍ରକାଶ ଶଶୀମଣ୍ଡଳ ।
ଚନ୍ଦନବିନ୍ଦୁ ତିଳକ ତେସନ । ହରି-ଭାଲପଟେ ଅତି ଶୋଭନ ।
ଘନକୁଚଭାର, ମର୍ଦ୍ଦନେ ନିର୍ଦ୍ଦୟ ହୃଦୟ ତା'ର ।।

ଗଦ୍ୟ— ଶ୍ରୀକୃଷ୍ଣଙ୍କ ଲଲାଟପଟଳରେ ଯେଉଁ ଚନ୍ଦନବିନ୍ଦୁ ଲାଗିରହିଛି ତାହା ମେଘମଣ୍ଡଳରେ ଚଳଚଞ୍ଚଳ ହେଉଥିବା ଚନ୍ଦ୍ରମଣ୍ଡଳ ପରି ଅତ୍ୟନ୍ତ ମନମୋହକ ହୋଇଛି । ପ୍ରକୃତରେ ସଖି, ନୀଳମଣି ଶ୍ରୀକୃଷ୍ଣଙ୍କ ଭାଲପଟରେ ଥିବା ସେହି ଚନ୍ଦନବିନ୍ଦୁ, ମେଘପଟଳରେ ଲୁଚକାଳି ଖେଳିବା ପରି ଚପଳଗତି କରୁଥିବା ଚନ୍ଦ୍ରବିମ୍ବକୁ ନିନ୍ଦାକରୁଛି । ଗୋପରମଣୀମାନଙ୍କର ଉନ୍ନତ ସ୍ତନମଣ୍ଡଳର ପ୍ରାନ୍ତଭାଗକୁ ନିର୍ଦ୍ଦୟଭାବରେ ମର୍ଦ୍ଦନ କରୁଥିବାରୁ ଯାହାଙ୍କର ବକ୍ଷସ୍ଥଳ ଅତ୍ୟନ୍ତ କଠିନ ହୋଇଛି, ସେହି ଶ୍ରୀକୃଷ୍ଣଙ୍କୁ ପାଇବା ପାଇଁ ମୁଁ ଇଚ୍ଛା କରୁଛି ।

**ମଣିମୟମକରମନୋହରକୁଣ୍ଡଳମଣ୍ଡିତଗଣ୍ଡମୁଦାରମ୍,**
**ପୀତବସନମନୁଗତମୁନିମନୁଜସୁରାସୁରବରପରିବାରମ୍ । (ଚ)**

ପଦ୍ୟ – ମନୋହର ମଣିମୟକୁଣ୍ଡଳ । ମଣ୍ଡିତ ଗୋବିନ୍ଦ ଗଣ୍ଡଯୁଗଳ ॥
କଟିତଟେ ଶୋହେ ପୀତ ଅମ୍ବର । ସୁର ଅସୁର ଯା'ର ପରିଚାର ॥
ମୁନିଜନ ଆଦି, ଇତର ମନୁଷ୍ୟ କିଏ ପ୍ରସିଦ୍ଧି ॥

ଗଦ୍ୟ – ସେହି ଶ୍ରୀକୃଷ୍ଣ କର୍ଣ୍ଣରେ ମଣିମୟ ମକର ଆକୃତିର କୁଣ୍ଡଳ ଦୁଇଟି ପିନ୍ଧିଛନ୍ତି । ତା' ଫଳରେ ଔଦାର୍ଯ୍ୟଗୁଣଯୁକ୍ତ ତାଙ୍କର ଗଣ୍ଡଯୁଗଳ ମଣିମୟତେଜରେ ଉଦ୍‌ଭାସିତ ହୋଇଉଠିଛି । ପୀତାମ୍ବରଧାରୀ ଯେଉଁ ଶ୍ରୀକୃଷ୍ଣଙ୍କର ନାରଦ ଆଦି ମୁନିଗଣ, ଭୀଷ୍ମ ଆଦି ମହାମାନବ ସମୂହ, ଇନ୍ଦ୍ର ଆଦି ଦେବବୃନ୍ଦ ତଥା ପ୍ରହ୍ଲାଦ ଆଦି ଅସୁରମାନେ ପରିଜନ ରୂପେ ରହିଛନ୍ତି, ସେହି ନାଗରବରଙ୍କ ବିରହରେ ମୋର ମନ ଉନ୍ମଥିତ ହେଉଛି ।

**ବିଶଦକଦମ୍ବତଳେ ମିଳିତଂ କଳିକଳୁଷଭୟଂ ଶମୟନ୍ତମ୍,**
**ମାମପି କିମପି ତରଙ୍ଗଦନଙ୍ଗଦୃଶା ମନସା ରମୟନ୍ତମ୍ । (ଛ)**

ପଦ୍ୟ – ଶ୍ୱେତ କଦମ୍ବତଳେ ଜନାର୍ଦ୍ଦନ । କଳିକଲୁଷ କରେ ବିନାଶନ ॥
ମୋହର ମନ ତାହା ତହିଁ ଗମେ । ମଦନେ ତରଳ ଲୋଚନେ ରମେ ॥
ଦେଖିବାକୁ ଆଶ, ଯେତେ ଦୁଃଖ ଦେଲେ ନୋହେ ନିରାଶ ॥

ଗଦ୍ୟ– ପ୍ରଣୟକଳହରେ କଲୁଷିତ ମୋର ହୃଦୟକୁ ଶାନ୍ତ କରିବା ଉଦ୍ଦେଶ୍ୟରେ ମନୋରମ କଦମ୍ବ ବୃକ୍ଷ ମୂଳରେ ଉପସ୍ଥିତ ଅଥବା କଳିକାଳର ପାପ ସମୂହଦ୍ୱାରା କଲୁଷିତ ହୃଦୟଯୁକ୍ତ ଲୋକମାନଙ୍କ ମନକୁ ନିର୍ମଳ କରିବା ଉଦ୍ଦେଶ୍ୟରେ ମନୋଜ୍ଞ ତଥା ପବିତ୍ର କଦମ୍ବମୂଳରେ ଶ୍ରୀକୃଷ୍ଣ ଉଭା ହୋଇଛନ୍ତି ଏବଂ ମୋ' ଆଡ଼କୁ ତରଙ୍ଗାୟିତ କାମଦୃଷ୍ଟିରେ କଟାକ୍ଷପାତ କରି ମନମନ୍ଦିରରେ ମୋ' ସହିତ କ୍ରୀଡ଼ା କରୁଥିବା ସେହି ନାଗରବରଙ୍କୁ ଏକାନ୍ତରେ ପାଇବା ପାଇଁ ମୁଁ ଇଚ୍ଛା କରୁଛି ।

**ଶ୍ରୀଜୟଦେବଭଣିତମତିସୁନ୍ଦରମୋହନମଧୁରିପୁରୂପମ୍,**
**ହରିଚରଣସ୍ମରଣଂ ପ୍ରତି ସମ୍ପ୍ରତି ପୁଣ୍ୟବତାମନୁରୂପମ୍ । (ଜ)**

ପଦ୍ୟ – ଶ୍ରୀମନ୍ତ ଜୟଦେବ କବି ଭଣେ । କୃଷ୍ଣ-ମୋହନ ମୂରତି ନିର୍ଗୁଣେ ॥
ନାଗେନ୍ଦ୍ର ମୁନିଇନ୍ଦ୍ର ସୁଜ୍ଞ ସୁଖ । ଯେଉଁ ଚରଣ ଚିନ୍ତି ତ୍ୟଜେ ଦୁଃଖ ॥
ସେ ମୂର୍ତ୍ତିଙ୍କ ସାର, ଭକ୍ତଦୁରିତ ଛେଦନେ କୁଠାର ॥

ଗଦ୍ୟ– ଶ୍ରୀ ଜୟଦେବ କବି ମୋହନସୁନ୍ଦର ମଧୁଦୈତ୍ୟନିସୂଦନ ଶ୍ରୀକୃଷ୍ଣଙ୍କ ରୂପବର୍ଣ୍ଣନା କରିଛନ୍ତି । ବର୍ତ୍ତମାନର କଳିଯୁଗରେ ପୁଣ୍ୟବାନ୍ ସୌଭାଗ୍ୟଶାଳୀ ଲୋକମାନେ ତାଙ୍କର ନାମଗୁଣ ସ୍ମରଣ-କୀର୍ତ୍ତନରେ ଅଧିକ ମନୋଯୋଗୀ ହେବେ । ଶ୍ରୀଜୟଦେବଙ୍କ ଭଣିତ ଶ୍ରୀକୃଷ୍ଣଙ୍କ ମୋହନସୁନ୍ଦର ରୂପବର୍ଣ୍ଣନା ଶୁଣି ସାଧାରଣ ଜନମାନେ ମଧ୍ୟ ପୁଣ୍ୟବାନ୍ ଯୋଗିଗଣଙ୍କ ପରି ଅନୁରୂପ ଫଳ ଲାଭକରିବେ ।

ଗଣୟତି ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ,
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।
ଯୁବତିଷୁ ଚଳତ୍ତୃଷ୍ଣେ କୃଷ୍ଣେ ବିହାରିଣି ମାଂ ବିନା,
ପୁନରପି ମନୋବାମଂ କାମଂ କରୋତି କରୋମି କିମ୍ ।୨।

ପଦ୍ୟ – କୃଷ୍ଣର ଗୁଣ ଗୁଣି ମୋର ଦେହ । ଭ୍ରମ ହୋଇ ଚିତ୍ତ କରୁଛି ମୋହ ।।
ଯେତେ ଦୋଷ କଲେ ମୁଁ ନ ଘେନଇ । ପୁନରପି ଚିତ୍ତ ତାହାର ତହିଁ ।।
ସେ ନିର୍ଦ୍ଦୟ ହରି, ମୋ' ବିନେ କ୍ରୀଡେ ଘେନି ବ୍ରଜନାରୀ ।।

ଗଦ୍ୟ– ହେ ସଖି, ମୋ' ମନ ସର୍ବଦା ଶ୍ରୀକୃଷ୍ଣଙ୍କ ଗୁଣସମୂହକୁ ସ୍ମରଣ କରୁଛି; ଭୁଲ୍‌ରେ ଦିନେ ହେଲେ ମଧ ତାଙ୍କଠାରେ କିଛି ଦୋଷଥିବାର ଦେଖିବା ପାଇଁ ଇଚ୍ଛା କରୁନାହିଁ । କିମ୍ବା ଭ୍ରମରେ ସୁଦ୍ଧା ମୁଁ ତାଙ୍କ ଉପରେ କୋପ କରିପାରୁ ନାହିଁ । ଅନ୍ୟାନ୍ୟ ଗୋପଯୁବତୀମାନଙ୍କ ପ୍ରେମରେ ମଜ୍ଜି, ସେ ମୋତେ ତ୍ୟାଗ କରି ରାସ-ଲୀଳା-ବିହାରରେ ମାତିଛନ୍ତି । ତଥାପି ମୋ' ମନ ତାଙ୍କରି ସହିତ କ୍ରୀଡ଼ା କରିବାକୁ ପୁଣି ପୁଣି ଇଚ୍ଛାକରୁଛି । ମୁଁ ଏବେ କରିବି କ'ଣ ?

*[ ଗୁଣ୍ଡକିରୀ ରାଗେଣ ଗୀୟତେ । ଗୀତ-୨ ]*

( ମାଳବ ଗୌଡ଼ ରାଗେଣ ଏକତାଳୀ ତାଳେନ ଚ ଗୀୟତେ । )

ନିଭୃତନିକୁଞ୍ଜଗୃହଂ ଗତୟା ନିଶି ରହସି ନିଲୀୟ ବସନ୍ତମ୍ ।
ଚକିତବିଲୋକିତସକଳଦିଶା ରତିରଭସଭରେଣ ହସନ୍ତମ୍ ।
ସଖିହେ, କେଶିମଥନମୁଦାରମ୍,
ରମୟ ମୟା ସହ ମଦନମନୋରଥଭାବିତୟା ସବିକାରମ୍ । (କ) । ଧ୍ରୁବମ୍ ।

ପଦ୍ୟ – ଶୁଣ ସଜନି ବଚ଼ନ ମୋହର । କେଶିରିପୁତୁଲେ ସଂଯୋଗ କର ।
କାମ-କାମନା ପୂର୍ଣ୍ଣକର ମୋର । ବିବିଧ ପ୍ରକାରେ ଯେତେ ଶୃଙ୍ଗାର ।
ଶୁଣ ପ୍ରାଣସହି, ଯେମନ୍ତ ଭାବେ କେଳି କରିବଇଁ ।।
ନିର୍ଜନ ନିକୁଞ୍ଜ ସଦନେ ମୁହିଁ । ନିଶି ଅନ୍ଧକାରେ ଥିବଇଁ ତହିଁ ।
ନ ଦେଖି ଚକିତ ହୋଇବେ ହରି । ଚାହିଁବେ ଦିଗେ ଦିଗେ ଅନୁସରି ।
ପଶିବେ ସେ ବନ, ହସିବେ ମୋର ପାଇଣ ଦର୍ଶନ ।।

ଗଦ୍ୟ– ହେ ସଖି, ଏକାନ୍ତ ଏହି ଲତାକୁଞ୍ଜକୁ ଆସି କାମଭାବିତ ହୋଇ, କାଳେ ଶ୍ରୀକୃଷ୍ଣ ଏଠାକୁ ଆସି କୌଣସି ସ୍ଥାନରେ ରହି ମୋ' ଅସ୍ତବ୍ୟସ୍ତତା ଲକ୍ଷ୍ୟ କରୁଥିବେ, ସେପରି ଭାବି ଚକିତ ଚିତ୍ତରେ ଏତେତେଣେ ମୁଁ ଚାହିଁ ତାଙ୍କ ସହିତ ମିଳିତ ହେବାପାଇଁ ଭାବୁଛି । ସେ ହୁଏତ ଏହି ମନୋଜ୍ଞ ରାତ୍ରିରେ କେଉଁଠି ଲୁଚି ରହି ମୋ' କାମଦଶା ଦେଖି ମନ୍ଦ ମନ୍ଦ

ହସୁଥିବେ । କାମଭାବନାଯୁକ୍ତ ଅତ୍ୟନ୍ତ ଉଦାର ସେହି କେଶିଦୈତ୍ୟର ବିନାଶକାରୀ ଶ୍ରୀକୃଷ୍ଣଙ୍କ ସହିତ ମୋର ମିଳନ କରାଅ ।

**ପ୍ରଥମସମାଗମଲଜ୍ଜିତୟା ପଟୁଚାଟୁଶତୈରନୁକୂଳମ୍ ।**
**ମୃଦୁମଧୁରସ୍ମିତଭାଷିତୟା ଶିଥିଳୀକୃତଜଘନଦୁକୂଳମ୍ । (ଖ)**

ପଦ୍ୟ – ପ୍ରଥମେ ତା'ର ମୋହର ସଙ୍ଗତ । ଲଜ୍ଜାଭରେ ମୋ' ତନୁ ସଙ୍କୁଚିତ ।
ବିବିଧ ପ୍ରକାରେ ଚାଟୁ ଯେତେକ । କହିବେ ମୃଦୁମଧୁରେ ଅନେକ ।
ମୋ' ହାସ୍ୟ ବଚନ, ଫେଡ଼ିବେ ଘନଜଘନୁ ବସନ ।।

ଗଦ୍ୟ – ହେ ସଖି, ତାଙ୍କ ସହିତ ମୋର ପ୍ରଥମ ମିଳନ ହେତୁରୁ ମୁଁ ଲାଜରେ ଲୋଟିପଡୁଥିବି । ସେ ମଧ ଅନେକ ପ୍ରକାର ଚାଟୁବଚନ କହିବାରେ ବେଶ୍ ପାରଗ ଅଟନ୍ତି । ସେ ମୋର ଲାଜ ଛଡ଼ାଇବା ପାଇଁ ଅନେକ ପ୍ରକାର ସମୟ ଅନୁକୂଳ ଚାଟୁବଚନ କହିବେ । ତାହା ଶୁଣିବାମାତ୍ରେ ମୁଁ ମଧ୍ୟ ମନ୍ଦ ମନ୍ଦ ହସି କୋମଳ ସ୍ୱରରେ ଆପଣାର ସ୍ୱୀକୃତି ସୂଚକ ବଚନ କହିବି । ମୋର ଅନୁକୂଳ ମତ ଜାଣି ସେ ଧୀରେ ଧୀରେ ମୋ' ଜଘନଦେଶରୁ ବସନ ଆଡେଇଦେଇ, ମୋ' ସହିତ ରତିକ୍ରୀଡ଼ାରେ ପ୍ରବୃତ୍ତ ହେବା ପାଇଁ ଭରସି ଉଠିବେ । ଏପରି ଯେଉଁ ଶ୍ରୀକୃଷ୍ଣ, ତାଙ୍କ ସହିତ ମୋର ମିଳନ କରାଅ ।

**କିଶଳୟଶୟନନିବେଶିତୟା ଚିରମୁରସି ମମୈବ ଶୟାନମ୍ ।**
**କୃତପରିରମ୍ଭଣଚୁମ୍ବନୟା ପରିରଭ୍ୟ କୃତାଧରପାନମ୍ । (ଗ)**

ପଦ୍ୟ– ନବୀନ ପଲ୍ଲବ ଶଯ୍ୟା ଉପରେ । କୃଷ୍ଣଙ୍କୁ ଆଣି ଶୁଆଇବି ଉରେ ।
କରିବି ଗାଢ଼ଭରେ ଆଲିଙ୍ଗନ । ନଳୀନ ବଦନେ ଦେବି ଚୁମ୍ବନ ।
ଉତ୍ସୁକରେ ମନ, ଅଧରୁ ଅମୀୟ କରିବି ପାନ ।।

ଗଦ୍ୟ – ହେ ସଖି, ସେତେବେଳେ ମୁଁ କାମ ଜ୍ୱାଳାରେ ବ୍ୟଥିତା ହୋଇ ନୂତନ କୋମଳ ପତ୍ରଶଯ୍ୟାରେ ଶୋଇଥିବି । ସେ ମୋ' ସହିତ ରମଣ କରିବା ଅବସ୍ଥାରେ ମୋ' ବକ୍ଷଦେଶରେ ଶୟନ କରିଥିବେ । ଏପରି ମନୋଜ୍ଞ ପରିବେଶରେ ମୁଁ ତାଙ୍କ ଶରୀରକୁ ଦୃଢ଼ବାହୁବନ୍ଧନରେ ଆଲିଙ୍ଗନ କରି ତାଙ୍କୁ ଚୁମ୍ବନ ଦେଉଥିବି ଏବଂ ସେ ମଧ ମୋତେ ଆଲିଙ୍ଗନପାଶରେ ବନ୍ଦୀ କରି ମୋ' ଅଧରରୁ ମଧୁପାନ କରୁଥିବେ । ଏପରି କାମ ଆବେଶରେ ବଶୀଭୂତ ଶ୍ରୀକୃଷ୍ଣଙ୍କୁ ଆଣି ମୋ' ସହିତ ମିଳାଇଦିଅ ।

**ଅଳସନିମୀଳିତଲୋଚନୟା ପୁଲକାବଳିଲଳିତକପୋଳମ୍ ।**
**ଶ୍ରମଜଳସକଳକଳେବରୟା ବରମଦନମଦାଦତିଲୋଳମ୍ । (ଘ)**

ପଦ୍ୟ – ମଦନ ମତ୍ତଭରେ ଅତି ଭୋଳ । ହୋଇଥିବେ ସେହୁ ଅତି ଚଞ୍ଚଳ ।
ସକଳ କଳେବର ଶ୍ରମଝାଳେ । ପୁଲକିତ ଘନ କପୋଳ ତଳେ ।
ଅଳସିତ ଘେନି, ବୁଜିଥିବ ମୋର ନୟନ ବେନି ।।

ଗଦ୍ୟ – ହେ ସଖି, ତାଙ୍କ ସହିତ ରତିକେଳି ଶେଷ କରିଥିବାରୁ, ମୋ' ଦେହ ଶ୍ରମଜନିତ ଝାଳରେ ସୁତୁବୁତୁ ହୋଇଯାଇଥିବ । ରତିସୁଖରେ ଭୋଳ ହୋଇ ପରିତୃପ୍ତିଜନିତ ଆନନ୍ଦରେ ମୋ' ଆଖି ଦୁଇଟି ଅଳସରେ ଅର୍ଦ୍ଧମୁଦ୍ରିତ ହୋଇଯାଇଥିବେ । ମୋର ଝାଳ ସୁତୁବୁତୁ ଦେହକୁ ଗାଢ଼ ଆଲିଙ୍ଗନପାଶରେ ଭିଡ଼ି ଧରିଥିବାରୁ, ତାଙ୍କର ଲଳିତ ଗଣ୍ଡଯୁଗଳ ପୁଲକିତ ହୋଇଉଠିଥିବ ଏବଂ ସେ କାମାବେଶରେ ଅତ୍ୟନ୍ତ ଚଞ୍ଚଳ ହୋଇଉଠିଥିବେ । ଏପରି କାମକେଳିପ୍ରବୀଣ ଶ୍ରୀକୃଷ୍ଣଙ୍କୁ ଆଣି ମୋ' ସହିତ ମିଳାଇଦିଅ ।

**କୋକିଳକଳରବକୂଜିତୟା ଜିତମନସିଜତନ୍ତ୍ରବିଚାରମ୍ ।**
**ଶ୍ଳଥକୁସୁମାକୁଳକୁନ୍ତଳୟା ନଖଲିଖିତଘନସ୍ତନଭାରମ୍ ।। (ଙ)**

ପଦ୍ୟ – କାମଭୋଳେ ମୋର ସୁରସ ବାଣୀ । କୋକିଳ ମୃଦୁ ମୃଦୁ ଭାବ ଜାଣି ।
ଫିଟିବ କୁନ୍ତଳୁ କବରୀ ଭାର । ଖସି କୁସୁମ ପଡ଼ିବ ଶଯ୍ୟାର ।
ଘନକୁଚେ ବେନି, ଲେଖିବେ ହରି ତୀକ୍ଷ୍ଣ ନଖ ଘେନି ।।

ଗଦ୍ୟ– ସେହି ସମୟରେ ରତିକ୍ରୀଡ଼ାର ପରିତୃପ୍ତିରେ ମୋ' ମୁଖରୁ କୋକିଳର କଳକୂଜନ ପରି ମନୋରମ ମଧୁର ବାଣୀ ନିଃସୃତ ହେଉଥିବ ଏବଂ ରତିକାଳୀନ ମନୋରମ ସଜ୍ଜାରେ ମୋ' କବରୀରେ ଗୁନ୍ଥା ଯାଇଥିବା ଫୁଲଗୁଡ଼ିକ ଫିଟିପଡ଼ି ତଳେ ବିଞ୍ଚିହୋଇ-ଯାଇଥିବେ । ସେ କାମକଳାରେ ଅତ୍ୟନ୍ତ ନିପୁଣ ହୋଇଥିବାରୁ ବିବିଧ ବନ୍ଧରେ ମୋ' ସହିତ ରତିକ୍ରୀଡ଼ା କରୁଥିବେ ଏବଂ ମୋ' ଉନ୍ନତ ଘନପୟୋଧର ଯୁଗଳରେ ନଖକ୍ଷତ ଅଙ୍କିତ କରୁଥିବେ । ସଖି, ଏପରି ରତିକଳା ନିପୁଣ ଶ୍ରୀକୃଷ୍ଣଙ୍କୁ ଆଣି ମୋ' ସହିତ ମିଳାଇଦିଅ ।

**ଚରଣରଣିତମଣିନୂପୁରୟା ପରିପୂରିତସୁରତବିତାନମ୍ ।**
**ମୁଖରବିଶୃଙ୍ଖଳମେଖଳୟା ସକଚଗ୍ରହଚୁମ୍ବନଦାନମ୍ । (ଚ)**

ପଦ୍ୟ – କଟୀରେ କଟୀମେଖଳା ମୋହର । ପୟରେ ରୁଣୁଝୁଣିତ ନୂପୁର ।
କ୍ରୀଡ଼ାକାଳେ ଏହୁ କରିବେ ନାଦ । ପୂରିବ କେଳିସଦନେ ଶବଦ ।
ସେ ଜଗଜ୍ଜୀବନ, କେଶ ଧରି ମୁଖେ ଦେବେ ଚୁମ୍ବନ ।।

ଗଦ୍ୟ – ଉତ୍ତାନ କାଳୀନ ସୁରତ ଅବସ୍ଥାରେ ମୋର ଚରଣ ଯୁଗଳରେ ବନ୍ଧା ହୋଇଥିବା ମଣିନିର୍ମିତ ନୂପୁରର କିଣିକିଣି ନାଦ ମୃଦୁମନ୍ଦ ସ୍ୱରରେ ଗୁଞ୍ଜରିତ ହେଉଥିବ ଏବଂ ମୋ' ଅଣ୍ଟାରେ ପିନ୍ଧିଥିବା ଚନ୍ଦ୍ରହାରର ଝଙ୍କାରରେ ପରିବେଶ ଝଙ୍କୃତ ହୋଇଉଠୁଥିବ । ସେତେବେଳେ ମୋର କେଶପାଶକୁ ଭିଡ଼ିଧରି ସେ ଗାଢ଼ ଚୁମ୍ବନଦାନ କରିବା ସଙ୍ଗେ ସଙ୍ଗେ ସୁରତକ୍ରୀଡ଼ାରେ ପରିପୂର୍ଣ୍ଣତା ଲାଭକରୁଥିବେ । ହେ ସଖି, ଏପରି ରତିକୁଶଳ ଶ୍ରୀକୃଷ୍ଣଙ୍କୁ ମୋ' ପାଶକୁ ଘେନିଆସ ।

**ରତିସୁଖସମୟରସାଳସୟା ଦରମୁକୁଳିତନୟନସରୋଜମ୍ ।**
**ନିଃସହନିପତିତତନୁଲତୟା ମଧୁସୂଦନମୁଦିତମନୋଜମ୍ । (ଛ)**

ପଦ୍ୟ – ରତିସୁଖ କାଳେ ହୋଇ ଶିଥିଳ । ଚାହିଁ ନ ପାରି ଲୋଚନ-କମଳ ।
ନିଷ୍ପ୍ରାଣ ହୋଇଣ ଶଯ୍ୟା ଉପରେ । ଶୋଇଥିବି ମୁଁ ଅଳସିତ ଭରେ ।
ସେ ମଧୁସୂଦନ, କୋଟିମଦନ ପ୍ରସନ୍ନ ବଦନ ।।

ଗଦ୍ୟ – ରତିସୁଖ ଲାଭ କରିବା ପରେ, ମୋର ଶରୀର ଅଳସବଶତଃ ନବପଲ୍ଲବ ଶଯ୍ୟାରେ ଉତ୍ତାନ ହୋଇ ପଡ଼ିରହିଥିବ ଏବଂ ରତିରସରେ ପରିତୃପ୍ତି ଲାଭ କରି ମୋର ତନୁଲତିକା ନିତାନ୍ତ ଅସହାୟ ଅବସ୍ଥାରେ ରହିଥିବ । ମୋର କ୍ଳାନ୍ତି ତଥା ରତିରଣରେ ପରାଭୂତ ହୋଇଥିବା ଅବସ୍ଥାକୁ ଲକ୍ଷ୍ୟକରି, ତାଙ୍କର ନୟନଯୁଗଳ ଅତିଶୟ ପ୍ରୀତିରେ ମୁଦ୍ରିତ ହୋଇଆସୁଥିବ ଏବଂ ରତିସମରରେ ଜୟଯୁକ୍ତ ହୋଇଥିବାରୁ ତାଙ୍କର କାମବାସନା ଉଦ୍ବେଳିତ ହୋଇଉଠୁଥିବ । ହେ ସଖି, ମଧୁଦୈତ୍ୟକୁ ପରାଭୂତ କରିଥିବା ସେହି ଶ୍ରୀକୃଷ୍ଣଙ୍କୁ ମୋ' ନିକଟକୁ ଘେନିଆସ ।

**ଶ୍ରୀଜୟଦେବଭଣିତମିଦମତିଶୟମଧୁରିପୁନିଧୁବନଶୀଳମ୍,**
**ସୁଖମୁତ୍କଣ୍ଠିତରାଧିକୟା * କଥିତଂ ବିତନୋତୁ ସଲୀଳମ୍ । (ଜ)**

ପଦ୍ୟ – ଜୟଦେବ କବି ଏ ଗୀତ ଭଣି । ବାସୁଦେବ କେଳିରସ ବଖାଣି ।
ଉତ୍କଣ୍ଠେ ରାଧିକା ସଖୀକି କହି । ତିନିଲୋକକୁ ସୁଖକର ଏହି ।
ହେ ସକଳ ଜନ, ତୁମ୍ଭମାନଙ୍କ ହେଉ ଶୁଭମାନ ।।

ଗଦ୍ୟ – ଶ୍ରୀଜୟଦେବ କବି କହୁଛନ୍ତି – ହେ ଭକ୍ତଜନମାନେ, ଶ୍ରୀକୃଷ୍ଣଙ୍କ ରତିବିଳାସ ବର୍ଣ୍ଣିତ ଘଟନା ଏବଂ ସମ୍ଭାବିତ ସୁଖ ଲାଭରେ ଉତ୍କଣ୍ଠିତା ଶ୍ରୀରାଧାଙ୍କ କାମ ଉଚ୍ଚାଟନ ତୁମମାନଙ୍କ ହୃଦୟରେ ହରିରସଲୀଳା ବିସ୍ତାର କରୁ ।

**ହସ୍ତସ୍ରସ୍ତବିଳାସବଂଶମନୃଜୁଭ୍ରୂବଲ୍ଲିମଦ୍ ବଲ୍ଲବୀ-**
**ବୃନ୍ଦୋତ୍ସାହଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ରଗଣ୍ଡସ୍ଥଳମ୍ ।**
**ମାମୁଦ୍ବୀକ୍ଷ୍ୟବିଲଜ୍ଜିତଂ ସ୍ମିତସୁଧାମୁଗ୍ଧାନନଂ କାନନେ,**
**ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମି ଚ । । ୩ ।**

ପଦ୍ୟ – ଶ୍ରୀକୃଷ୍ଣ ଯହୁଁ ଦେଖିଲେ ରାଧାକୁ । ସଲଜ୍ଜେ ଅତି ସଙ୍କୋଚି ମନକୁ ।
ହସ୍ତରୁ ମୋହନବେଣୁ ପଡ଼ିଲା । ଗଣ୍ଡଯୁଗଳ ଝାଳରେ ବୁଡ଼ିଲା ।
ସ୍ତମ୍ଭନଭ୍ରୂଲତା, ନିରୁତ୍ସାହେ ଗଲେ ଗୋପବନିତା ।।

---

* 'ଗୋପବଧୂ' ରସିକପ୍ରିୟା ଟୀକା ପାଠ ।

ହରଷ ହୋଇ ସେ ରାଧା ସୁନ୍ଦରୀ । କହଇ ଆସି ଶୁଣ ସହଚରି !
ବେଢ଼ିଛନ୍ତି ବ୍ରଜ ଯୁବତୀଗଣେ । ଦେଖିଲେ ହରି କ୍ରୀଡ଼ା କରେ ବନେ ।
ତା' ବଦନ କାନ୍ତି, ଦରହସିତ କି ସୁଧାଂଶୁଜ୍ୟୋତି ।।

ଗଦ୍ୟ – ହେ ସଖି, ଗୋପତରୁଣୀମାନଙ୍କ ଗହଣରେ ନୃତ୍ୟ କରୁଥିବା ନାଗର ଶ୍ରୀକୃଷ୍ଣଙ୍କୁ ଏହି ବନରେ ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତା ହୋଇଛି । ମୋ' ଉପରେ ତାଙ୍କର ଦୃଷ୍ଟି ପଡ଼ିବାମାତ୍ରକେ ସେ ଅତ୍ୟନ୍ତ ଲଜ୍ଜିତ ହୋଇଛନ୍ତି । ତେଣୁ ତାଙ୍କ ସୁଧାପୂର୍ଣ୍ଣ ମୁଖମଣ୍ଡଳରେ ଲଜ୍ଜାଜନିତ ମନ୍ଦହାସ ଶୋଭାପାଉଛି । ଯେଉଁ ଗୋପବାଳୀମାନଙ୍କର ଭ୍ରୂକୁଟୀ କୁଟିଳ ହୋଇଛି ସେମାନଙ୍କ ଦୃଷ୍ଟି ଶ୍ରୀକୃଷ୍ଣଙ୍କଠାରୁ ଅପସାରିତ ହୋଇଛି, ଅର୍ଥାତ୍ ସେମାନେ ମୋତେ ଦେଖିବାମାତ୍ରେ ଶ୍ରୀକୃଷ୍ଣଙ୍କଠାରୁ ଅପସରିଯାଉଛନ୍ତି । ଲଜ୍ଜାରେ ଶ୍ରୀକୃଷ୍ଣଙ୍କ ଗଣ୍ଡଯୁଗଳ ସ୍ୱେଦବିନ୍ଦୁରେ ଜରଜର ହୋଇଉଠିଛି । ଆହୁରି ମଧ ତାଙ୍କର ଅତ୍ୟନ୍ତ ପ୍ରିୟ ବିଳାସବଂଶୀଟି ଶିଥିଳିତ ହସ୍ତଲତାରୁ ଖସି ତଳେ ପଡ଼ିଯାଇଛି ।

ହେ ସଖି, ମୋତେ ଦେଖିବା ଫଳରେ ତାଙ୍କର ଯେଉଁ ଲଜ୍ଜାଜନିତ ଖେଦ ମନରେ ଜାତହୋଇଛି, ତା'ରି ଫଳରେ ଏ ପ୍ରକାର ବିକାର ତାଙ୍କଠାରେ ଦେଖାଦେଇଛି । ତେଣୁ ମୁଁ ତାଙ୍କର ଅବସ୍ଥା ଦେଖି ଅତ୍ୟନ୍ତ ଆନନ୍ଦିତା ହୋଇଛି ।

**ଦୁରାଲୋକସ୍ତୋକସ୍ତବକନବକାଶୋକକଳିକା**
**ବିକାସଃ କାସାରୋପବନପବନୋଽପି ବ୍ୟଥୟତି ।**
**ଅପି ଭ୍ରାମ୍ୟଦ୍‌ଭୃଙ୍ଗୀରଣିତରମଣୀୟା ନ ମୁକୁଳ-**
**ପ୍ରସୂତିଶ୍ଚୂତାନାଂ ସଖି ! ଶିଖରିଣୀୟଂ ସୁଖୟତି । ୪ ।**

ପଦ୍ୟ – ଦେଖ ସଖି ! ନବକଢ଼ି ଅଶୋକ । ପ୍ରକାଶ ହୁଅନ୍ତେ ବଢ଼ଇ ଶୋକ ।
ତୋଟା କାନନ ସରୋବର କୂଳ । ସଧୀରେ ବହଇ ମଳୟାନିଳ ।
ଏ ଦହଇ ମନ, ହରି ବିନୁ ଏ ଅନଳ ସମାନ ।।
ନବୀନ ବକୁଳ ଚୂତ ମୁକୁଳ । ଶିଖରେ ମତ୍ତଭରେ ଭୃଙ୍ଗକୁଳ ।
କରନ୍ତି ଭଣିତ ମଧୁରବାଣୀ । ଶୁଣି ଚିତ୍ତଭ୍ରମ ହୁଏ ମିତଣି !
ମୁଁ କରିବି କିସ, ଜାଣିଲି କୃଷ୍ଣ ମୋହରେ ନିରାଶ ।।

ଗଦ୍ୟ – ହେ ସଖି, ଏହି କୁଞ୍ଜବନର ଅଶୋକବୃକ୍ଷରେ ପେଣ୍ଡା ପେଣ୍ଡା ହୋଇ ଫୁଟିଥିବା ଅଶୋକ କଳିକାଗୁଡ଼ିକୁ ମୁଁ ଆଦୌ ସହ୍ୟ କରିପାରୁ ନାହିଁ । ଅଶୋକ କଳିକା କାମ ଉତ୍ତେଜକ ହୋଇଥିବାରୁ, ସେଗୁଡ଼ିକ ମୋ' ପକ୍ଷରେ ଆଦୌ ସୁଖକର ହେଉନାହାନ୍ତି । ଅଶୋକ କଳିକାର ବିକାସ ମୋ' ପକ୍ଷରେ ଦୁଃଖଦାୟକ ହୋଇଛି । ଏହି କୁଞ୍ଜବନର ପରିସର ମଧରେ ଥିବା ପୁଷ୍କରିଣୀର ଶୀତଳଜଳକୁ ସ୍ପର୍ଶକରି ମନ୍ଦ ମନ୍ଦ ହୋଇ ବହିଆସୁଥିବା ଶୀତଳ ତଥା ସୁଗନ୍ଧପବନ ମୋ' ମନରେ ବ୍ୟଥା ଜାତ କରୁଛି ।

ଏହି ଗିରିଶିଖରରେ ଥିବା ଆମ୍ବଗଛର ବଉଳର ସୁଗନ୍ଧରେ ପ୍ରଲୁବ୍ଧ ଭ୍ରମରମାନେ ଗୁଣୁଗୁଣୁ ହୋଇ ସେଠାରେ ପରିଭ୍ରମଣ କରୁଛନ୍ତି । ସେ ନୟନାଭିରାମ ଦୃଶ୍ୟ ମଧ୍ୟ ମୋ' ପକ୍ଷେ ଅସହ୍ୟ ହୋଇଉଠିଛି । ଆମ୍ବ ବଉଳରୁ ମଧୁ ଆହରଣ କରିବା ପାଇଁ, ତା' ଚାରିପଟେ ଭ୍ରମରମାନେ ଗୁଣୁଗୁଣୁ ହୋଇ ଉଡ଼ିବା ଫଳରେ ମୋର କାମବେଦନା ତୀବ୍ରତର ହେଉଛି ।

ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ
ଅକ୍ଲେଶକେଶବୋ ନାମ ଦ୍ୱିତୀୟଃ ସର୍ଗଃ । *

□□□

* ରାଣା କୁମ୍ଭାଙ୍କ ରସିକପ୍ରିୟାସମନ୍ୱିତ ଗୀତଗୋବିନ୍ଦ ପୁସ୍ତକରେ ଏହି ପୁଷ୍ପିକା ପୂର୍ବରୁ ଗୋଟିଏ ଶ୍ଲୋକ ଅଧିକ ଅଛି । ଏହି ଶ୍ଲୋକଟି ଓଡ଼ିଶାର ପୋଥିମାନଙ୍କରେ ପରିଦୃଷ୍ଟ ହୁଏନାହିଁ ।

''ସାକୂତସ୍ମିତମାକୁଳାକୁଳଗଳଦ୍‌ଧମ୍ମିଲ୍ଲମୁଲ୍ଲାସିତ –
ଭ୍ରୂବଲ୍ଲୀକମଲୀକଦର୍ଶିତଭୁଜାମୂଳୋର୍ଦ୍ଧ୍ୱହସ୍ତସ୍ତନମ୍ ।
ଗୋପୀନାଂ ନିଭୃତଂ ନିରୀକ୍ଷ୍ୟ ଗମିତା କାଙ୍‌କ୍ଷଶ୍ଚିରଂଚିନ୍ତୟ –
ନ୍ନନ୍ତ ର୍ମୁଗ୍‌ଧମନୋହରଂ ହରତୁ ବଃ କ୍ଲେଶଃ ନବଃ କେଶବଃ ।''

# ତୃତୀୟସର୍ଗ

କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାମ୍ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀ ।୧।
ଇତସ୍ତତସ୍ତାମନୁସୃତ୍ୟ ରାଧିକାମନଙ୍ଗବାଣବ୍ରଣଖିନ୍ନମାନସଃ,
କୃତାନୁତାପଃ ସ କଳିନ୍ଦନନ୍ଦିନୀତଟାନ୍ତକୁଞ୍ଜେ ନିଷସାଦ ମାଧବଃ ।୨ ।

ପଦ୍ୟ – ଯହୁଁ ସେ ରାଧା ଗମନ କୃଷ୍ଣର ଅତି ବିମନ,
ତେଜିଲେ ବିବିଧ କେଳି ବ୍ରଜକାମିନୀ ।
ସେ ରାଧା ରୂପ ପ୍ରକାଶ ସଂସାର ବନ୍ଧନ ପାଶ,
ତେଣୁ ସେ ହୃଦୟେ ତାପ ଅମୁଳ ପାଣି ।
ପ୍ରିୟାକୁ ସେ ଧରିଣ ମନେ, ଚାହାନ୍ତି ଚଞ୍ଚଳଚିତ୍ତେ ମଧୁସୂଦନେ ॥
ପୀଡ଼ିଲା ମଦନବାଣ ଗାଢ଼େ ଅତି କ୍ଷୀଣ ମନ, କଳିନ୍ଦନନ୍ଦିନୀ ପୁଲିନରେ ବିଶେଷି ।
ଗହନ ନିକୁଞ୍ଜବନ ଲତାକେଳିଗୃହ ସ୍ଥାନ, ବିଷାଦ ମାଧବ ତହିଁ ଭିତରେ ବସି ।
ଅତି ତାପି ଜଗତସାଇଁ, ନୟନ ମନ ରାଧାର ସନ୍ନିଧେ ଦେଇ ॥

ଗଦ୍ୟ – ସଂସାର ବାସନାର ଶୃଙ୍ଖଳା ସ୍ୱରୂପ ଶ୍ରୀରାଧାଙ୍କ ମନୋଭାବକୁ ହୃଦୟରେ ଧାରଣକରି, କଂସ ନାମକ ଅସୁରର ଶତ୍ରୁ ଶ୍ରୀକୃଷ୍ଣ ବ୍ରଜସୁନ୍ଦରୀ ଗୋପରମଣୀମାନଙ୍କୁ ତ୍ୟାଗ କରି ସେଠାରୁ ଚାଲିଗଲେ ।

ମାଧବ ଶ୍ରୀକୃଷ୍ଣ କନ୍ଦର୍ପର ବାଣରେ ଖିନ୍ନ ହୋଇ ଅନୁତାପ କରିବା ସଙ୍ଗେ ସଙ୍ଗେ, ଶ୍ରୀରାଧାଙ୍କୁ କୁଞ୍ଜବନର ଏତେତେଣେ ଖୋଜିବା ପରେ, ଅତ୍ୟନ୍ତ ଦୁଃଖିତ ମନରେ କଳିନ୍ଦନନ୍ଦିନୀ ଯମୁନା ତଟରେ ଥିବା ନିଜ କୁଞ୍ଜଗୃହରେ ବସିରହିଲେ ।·

*[ ଗୁର୍ଜରୀ ରାଗେଣ ଗୀୟତେ । ( ଯତିତାଳାଭ୍ୟାଂ ଗୀୟତେ ) (ଗୀତ – ୧) ]*

ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ ।
ସାପରାଧତୟା ମୟାପି ନ ନିବାରିତାତିଭୟେନ ।
ହରି ହରି ହତାଦରତୟା ଗତା ସା କୁପିତେବ । (କ) । ଧ୍ରୁବମ୍ ।

ପଦ୍ୟ – ବସିଣ ମଧୁସୂଦନ ବିଚାର କରନ୍ତି ମନ
ନୟନେ ଦେଖିଅଛି ପ୍ରାଣର ମଣି,
ଗୋପବଧୂସମୂହରେ କେଳି କରନ୍ତେ ନିର୍ଭରେ
ବଚନ ମୁଁ ନ କହିଲି ନିଷ୍ଠୁର ପ୍ରାଣୀ,

ଅପରାଧ କଲି ତାହାରେ,
ଅତି ତାପେ କୋପ କରିଗଲା ସେ ମୋରେ ।।

ଗଦ୍ୟ– କୁଞ୍ଜବନର କେଳିସଦନରେ ବସି ଶ୍ରୀକୃଷ୍ଣ ମନେମନେ ଅନୁତାପ କରି ବିଚାରକରୁଛନ୍ତି – ମୋତେ ଗୋପରମଣୀମାନଙ୍କ ଗହଣରେ ଦେଖି ହତାଦରା ହୋଇ ଅତ୍ୟନ୍ତ କୋପରେ ରାଧିକା ଏଠାରୁ ଚାଲିଗଲେ । ହାୟ ! ହାୟ ! ମୁଁ କ'ଣ କରିବି ? ମୁଁ ନିଜେ ଅପରାଧୀ ହୋଇଥିବାରୁ ଅତ୍ୟନ୍ତ ଭୟ କରି ତାଙ୍କୁ ଅଟକାଇ ପାରିଲିନାହିଁ ।

**କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।**
**କିଂ ଜନେନ ଧନେନ କିଂ ମମ କିଂ ଗୃହେଣ ସୁଖେନ । (ଖ)**

ପଦ୍ୟ – କି କରୁଥିବ ସେ ବସି କି ଆଶେ ବଚନ ଭାଷି,
ଚିରକାଳୁ ବିରହିଣୀ ହୋଇଛି ରାମା ।
ତା'ର ବିନୁ ମୋର ମନେ ନାହିଁ କାର୍ଯ୍ୟ ଧନେ ଜନେ,
ସଦନରେ ନାହିଁ ଆଉ ସୁଖର ସୀମା ।
ଏତେ କହି ଜଗନ୍ନିବାସୀ, ରାଧାର ଗୁଣ ସ୍ୱରୂପ ହୃଦରେ ଘୋଷି ।।

ଗଦ୍ୟ – ହେ ବିଧାତା, ଏ ଅବସ୍ଥାରେ ମୁଁ ଯଦି ତାଙ୍କ ନିକଟକୁ ଯିବି, ତେବେ ସେ ମୋ'ପ୍ରତି କି ପ୍ରକାର ବ୍ୟବହାର କରିବେ, କ'ଣ କହିବେ ? ସେ ଚିରବିରହିଣୀ ହୋଇ ନିତାନ୍ତ ବିଷାଦ ଚିତ୍ତରେ ରହିଥିବେ । ତାଙ୍କ ମନରେ ଦୁଃଖଦେଇ, ମୋର ଧନ, ଜନ, ଗୃହ ଓ ସୁଖରେ କି ଅବା ପ୍ରୟୋଜନ ? ତାଙ୍କ ବିହୀନେ ମୋର ଜୀବନ ବୃଥା ।

**ଚିନ୍ତୟାମି ତଦାନନଂ କୁଟିଳଭ୍ରୂରୋଷଭରେଣ ।**
**ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ । (ଗ)**

ପଦ୍ୟ – ଚିନ୍ତା କରୁଛି ମୋ' ମନ କ୍ରୋଧେ ରାଧାର ବଦନ,
ଦିଶୁଥିବ ଯେସନେ ଲୋହିତ କମଳ ।
ଭ୍ରୂଲତା ବେନି କୁଟିଳ କ୍ରୋଧରେ ଅତି ଚଞ୍ଚଳ, ଯେସନେକ ଶୋଭନ ଭ୍ରମର ଯୁଗଳ ।
କିଏ ରଙ୍ଗପଦ୍ମ ଉପରେ, ବସି ନପାରି ଭ୍ରମନ୍ତି ଆକୁଳଭରେ ।।

ଗଦ୍ୟ – ମୋ' ଆଚରଣ ଫଳରେ ଶ୍ରୀରାଧାଙ୍କ ମୁଖମଣ୍ଡଳ ରକ୍ତପଦ୍ମ ପରି ଲାଲ ହୋଇଯାଇଥିବ । ପବନରେ ଦୋହଲୁଥିବା କୋକନଦ ଉପରେ ଭ୍ରମରମାନେ ଯେପରି ଇତସ୍ତତଃ ହୋଇ ବସିପାରନ୍ତିନାହିଁ, ଠିକ୍ ସେହିପରି କ୍ରୋଧରେ ତା'ର ଭ୍ରୂଲତା ଯୋଡ଼ିକ କୁଟିଳ ହୋଇ ପ୍ରକମ୍ପିତ ହେଉଥିବ । ପ୍ରାଣପ୍ରିୟା ଶ୍ରୀରାଧାଙ୍କର ସେହି କ୍ରୋଧମୁଦ୍ରାଯୁକ୍ତ ମୁଖମଣ୍ଡଳ ମୋ' ଆଖି ଆଗରେ ଭାସିଉଠୁଛି । ତାକୁହିଁ ଚିନ୍ତା କରି ମୋ' ମନ ଅସ୍ଥିର ହେଉଛି ।

**ତାମହଂ ହୃଦି ସଙ୍ଗତାମନିଶଂ ଭୃଶଂ ରମୟାମି ।**
**କିଂ ବନେଽନୁସରାମି ତାମିହ କିଂ ବୃଥା ବିଳପାମି ।(ଘ)**

ପଦ୍ୟ – ତାହାଙ୍କୁ ମୋ' ହୃଦଗତେ ଘେନିଣ ଥାଇ ନିରତେ, ନିଶିଦିବା କ୍ଷଣମାତ୍ର ଅନ୍ତର ନାହିଁ ।
ଅତ୍ୟନ୍ତ ଉତ୍ସୁକ ହୋଇ ବିବିଧ କେଳି କରଇ, ବିଚ୍ଛେଦ କଳାକ ମୋତେ ଦାରୁଣ ବିହି ।
ଲୋଡ଼ିବି କେବଳ ବନର, ବିଅର୍ଥେ ବିଳାପ ମାତ୍ର କରିବା ସାର ।।

ଗଦ୍ୟ – ମୁଁ ତାହାଙ୍କୁ ସର୍ବଦା ଅତ୍ୟନ୍ତ ସ୍ନେହ ସହକାରେ ହୃଦୟରେ ଧାରଣ କରିଛି । ଅର୍ଥାତ୍ ମନ ମଧରେ ତାହାଙ୍କ ରୂପ, ଗୁଣ, ପ୍ରେମ ଓ ଆଚ଼ରଣ ଆଦି ସ୍ମରଣ କରୁଛି । ତେଣୁ ଏହି ନିର୍ଜ୍ଜନବନରେ ବୃଥା ଅରଣ୍ୟରୋଦନ ନକରି, ତାହାଙ୍କୁ ଖୋଜିବି । ଅଥବା ମୁଁ ତାଙ୍କୁ ବନମଧରେ କେଉଁଠି ଅବା ଅନୁସରଣକରିବି ଓ ବୃଥାରେ କାହିଁକି ବିଳାପ କରିବି ?

**ତନ୍ୱି ! ଖିନ୍ନମସୂୟୟା ହୃଦୟଂ ତବାକଳୟାମି**
**ତନ୍ନ ବେଦ୍ମି କୁତୋ ଗତାସି ନ ତେନ ତେଽନୁନୟାମି । (ଙ)**

ପଦ୍ୟ – ବୋଲନ୍ତି ଦେବ ମୁରାରି ଶୁଣ ସଖି ! କୃଶୋଦରି !
ନିଶ୍ଚୟ ଜାଣିଲି ମୁହିଁ ତୋହର କାୟା ।
ହିଂସା ଅଭିମାନ ବହି ଅତି କ୍ଷୀଣ କଲୁ ଦେହୀ,
କଠିନ ହୃଦୟ ତୋର ଅତି ନିର୍ଦ୍ଦୟା ।
ନୋହିଲି ମୁଁ ବିନୟୀ ବାରେ,
କାହିଁଗଲୁ ନ ଜାଣଇ ଏ ବନ ଘୋରେ ।।

ଗଦ୍ୟ – ହେ ସୁକୁମାରୀ ରାଧିକେ ! ମୁଁ ଭଲଭାବରେ ଜାଣିପାରିଛି, ମୋ' ଆଚ଼ରଣ ଫଳରେ ତୁମ ହୃଦୟ ଈର୍ଷ୍ୟାରେ କ୍ଷୁବ୍ଧ ହୋଇଉଠିଛି । କିନ୍ତୁ ତୁମେ କେଉଁଆଡେ ଗଲ, ତାହା ମୁଁ ଜାଣିନାହିଁ; ନୋହିଲେ ମୁଁ ଯାଇ ଅନୁନୟ ବିନୟରେ ତୁମକୁ ବୋଧ କରି ତୁମ ଈର୍ଷ୍ୟା ଓ କ୍ରୋଧ ଦୂର କରିଥାଆନ୍ତି ।

**ଦୃଶ୍ୟସେ ପୁରତୋ ଗତାଗତମେବ ମେ ବିଦଧାସି ।**
**କିଂ ପୁରେବ ସସଂଭ୍ରମଂ ପରିରମ୍ଭଣଂ ନ ଦଦାସି । (ଚ଼)**

ପଦ୍ୟ – ଲୋଚ଼ନ ଦେଖିଛି ମୋର ବିଧୁବଦନ ତୋହର,
ଅଗ୍ରତେ ଦେଖୁଚି ଆସି ଯାଉଛୁ ପ୍ରିୟେ !
ପୂର୍ବରେ ତୋହର ମୋର ଯେସନେ ମନ ସ୍ୱାଦର,
ତେସନ ପ୍ରାୟକ କି କେ ସୁଦୟା ନୋହେ ।

ଭୁଜେ ଭିଡ଼ିଣ ହୃଦଗତେ,
ଗାଢ଼େ ଆଲିଙ୍ଗନ କି କେ ନ କଲୁ ମୋତେ ।।

ଗଦ୍ୟ – ମୋ' ଆଖି ଆଗରେ ତୁମେ ନାଚିଯାଉଛ । ମନେହେଉଛି – ସତେ ଯେପରି ତୁମେ ମୋ'ରି ଆଗରେ ଗତାଗତ କରୁଛ ! କିନ୍ତୁ ପୂର୍ବରୁ ଯେପରି ମୋତେ ଦେଖିବା ମାତ୍ରେ ଆଲିଙ୍ଗନ କରି ଅଶେଷ ସୁଖ ପ୍ରଦାନ କରୁଥିଲ, ଏବେ ସେପରି କରୁନାହଁ କାହିଁକି ? (ଏଠାରେ କାମଭାବନା ଫଳରେ ଚିତ୍ତବିଭ୍ରମ ହେତୁରୁ ଶ୍ରୀକୃଷ୍ଣଙ୍କର ଏପରି ଅବସ୍ଥା ହୋଇଛି ।)

**କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।**
**ଦେହି ସୁନ୍ଦରି ! ଦର୍ଶନଂ ମମ ମନ୍ମଥେନ ଦୁନୋମି । (ଛ)**

ପଦ୍ୟ – କ୍ଷମାକର ମୋତେ ସଖି ! ବିକଚ଼ କମଳ ମୁଖୀ,
କଦାଚିତେ ଦୋଷ ଆଉ କରିବି ନାହିଁ ।
ଦେଖା ଦେଉ କିନା ମୋତେ ପ୍ରସନ୍ନ ହୋଇଣ ଚିତ୍ତେ,
ନିର୍ଦ୍ଦୟ ମଦନ ଦହୁଅଛଇ ଦେହୀ ।
ବାରେ ସଖି ! କରୁଣା କର, ବଜ୍ର ହୁଁ କଠିନ ଏହି ଅନଙ୍ଗଶର ।।

ଗଦ୍ୟ – ହେ ସୁନ୍ଦରି ! ମୁଁ ଯାହା କିଛି ଅପରାଧ କରିଛି, କ୍ଷମା କରିଦିଅ । ତୁମଠାରେ ଏଭଳି ଅପରାଧ ଆଉ ଦିନେ ହେଲେ କରିବି ନାହିଁ । ତୁମ ବ୍ୟତୀତ ମୁଁ କାମବାଣରେ ପୀଡ଼ିତ ହେଉଛି । ତେଣୁ ତୁମେ ଶୀଘ୍ର ମୋତେ ଦେଖାଦେଇ ମୋର କାମତାପ ଶାନ୍ତକର ।

**ବର୍ଣ୍ଣିତଂ ଜୟଦେବକେନ ହରେ ରିଦଂ ପ୍ରଣତେନ ।**
**କେନ୍ଦୁବିଲ୍ୱସମୁଦ୍ରସମ୍ଭବରୋହିଣୀରମଣେନ । (ଜ)**

ପଦ୍ୟ– ହରିର ରହସ୍ୟବାଣୀ ଜୟଦେବ ଯାହା ଭଣି, କେନ୍ଦୁବିଲ୍ୱ ନାମ ଗ୍ରାମ ସମୁଦ୍ରବତ ।
ତଥି ଉତପତ୍ତି ଚନ୍ଦ୍ର କବିରାଜ ପୂର୍ଣ୍ଣପଦ, ସକଳ ସଂସାର ସାର ସଙ୍ଗୀତ ରତ ।
ପଦ୍ମାବତୀ-ପରାଣ-କାନ୍ତ, ରୋହିଣୀର ନାଥ ଏ ନିର୍ମଳ ରଚିତ ।।

ଗଦ୍ୟ – କେନ୍ଦୁବିଲ୍ୱ ନାମକ ଶାସନ ହେଉଛି ଗୋଟିଏ ସମୁଦ୍ର । ସେହି ସମୁଦ୍ର ତୁଲ୍ୟ ଶାସନରେ ଚନ୍ଦ୍ରମାଙ୍କ ସଦୃଶ ଜାତହୋଇଥିବା ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ସର୍ବଦା ଆନତ ଜୟଦେବକବି ଏପରି ଭାବରେ ଶ୍ରୀହରିଙ୍କ ଚରିତ ବର୍ଣ୍ଣନ କରୁଛନ୍ତି ।

**ହୃଦି ବିସଲତାହାରୋ ନାୟଂ ଭୁଜଙ୍ଗମନାୟକଃ**
**କୁବଳୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।**
**ମଳୟଜରଜୋ ନେଦଂ ଭସ୍ମ ପ୍ରିୟାରହିତେ ମୟି**
**ପ୍ରହର ନ ହରଭ୍ରାନ୍ତ୍ୟାନଙ୍ଗ ! କ୍ରୁଧା କିମୁ ଧାବସି । ୩ ।**

ପଦ୍ୟ— ବୋଲନ୍ତି ଶୁଣସି ମାର ! ତୋହର ରିପୁ ସେ ହର,
କେ କି ଧାଇଁଅଛୁ ମୋତେ ସରୋଷ ହୋଇ ।
ଆଭରଣମାନ ଚାହିଁ ଭ୍ରାନ୍ତି ଅବା କରୁ ତୁହି, କହଇ ଅଗ୍ରତେ ତୋର ରତିର ସାଇଁ ।
ଦଣ୍ଡେ ରହି ଶୁଣ ଉରର, ଦୁଃଖିଜନ ଦେଖି ଦୟା କରନ୍ତି ଧୀର ।।
ହୃଦରେ ଧରିଛି ମୋର ମଳିନ ମୃଣାଳ ହାର, ନୁହଇ ଭୁଜଙ୍ଗରାଜ ଅନନ୍ତ ଅହି ।
କୁବଳୟଦଳ ମାଳ କଣ୍ଠେ ନୁହଇଁ ଗରଳ, ଦେହେ ମଳୟଜରଜ ଭସ୍ମ ନୁହଇଁ ।
ଶୁଣ କାମ କହଇ ତୋତେ, ନୀଳକଣ୍ଠ କୋଳେ କାନ୍ତା ଥାଇ ନିରତେ ।।
ପ୍ରିୟାର ବିଚ୍ଛେଦ ମୋର ତାପ ଅତି ଗୁରୁତର, ଅନଳେ ଦହନ ପ୍ରାୟ ହେଉଛି ଅଙ୍ଗ ।
ତେଣେ ସେ ଏମାନ ଆଣି ହୃଦୟେ ଅଛଇ ଘେନି, ବିଚାରିଣ କୋପ ତୁ ହେ କର ଅନଙ୍ଗ ।
ତୋତେ କାମ ! ବିନୟ କଲି, ପ୍ରହାର ନ କର ଶର ଶଙ୍କର ବୋଲି ।।

ଗଦ୍ୟ — ଶ୍ରୀକୃଷ୍ଣ ବିନୀତ ଭାବରେ କାମଦେବଙ୍କୁ ଅନୁରୋଧ କରି କହୁଛନ୍ତି – ହେ ଅନଙ୍ଗ, ପୂର୍ବେ ତୁମ ଶରୀରକୁ ଶିବ ଭସ୍ମ କରିଦେଇଥିବାରୁ, ସେହି କ୍ରୋଧରେ ତୁମେ ମୋତେ ଭ୍ରମବଶତଃ ଶିବ ବୋଲି ଅନୁମାନ କରି ଯେଉଁ ପ୍ରହାର କରୁଛ, ମୁଁ ତାହାର ପ୍ରକୃତ ପାତ୍ର ନୁହେଁ । ମୋର ବକ୍ଷସ୍ଥଳରେ ଶୀତଳ ମୃଣାଳ ହାର ଦେଖି ତୁମେ ଏହାକୁ ସର୍ପହାର ବୋଲି ମନେକରିଛ । ମୋ' କଣ୍ଠରେ ନୀଳକଇଁର ପତ୍ରମାନ ରହିଛି, ଏହାକୁ ବୋଧହୁଏ ତୁମେ ଶିବଙ୍କ କଣ୍ଠଦେଶରେ ଥିବା ବିଷଜ୍ୱାଳା (ନୀଳ) ବୋଲି ମନେକରିଛ । ପ୍ରିୟା ବିରହରେ ସନ୍ତପ୍ତ ହୋଇ ମୁଁ ମୋର ଶରୀରକୁ ଶୀତଳ କରିବା ପାଇଁ ଯେଉଁ ଚନ୍ଦନ ବୋଳିଥିଲି, ତାହା ବିରହତାପରେ ଶୁଖିଯାଇ ଏପରି ଦିଶୁଛି । ପ୍ରକୃତରେ ଏହା ଶିବଙ୍କ ଶରୀରରେ ବୋଳାଯାଇଥିବା ଭସ୍ମ ନୁହେଁ । ତେଣୁ ମୋର ଅନୁରୋଧ, ତୁମେ ମୋତେ ଭୁଲ୍‌ରେ ଶିବ ବୋଲି ଭାବିନେଇଛ । ଏପରି ଭ୍ରମର ବଶବର୍ତ୍ତୀ ହୋଇ ତୁମେ ମୋତେ ଫୁଲଧନୁରେ ପ୍ରହାର କରିବା ପାଇଁ ଧାଇଁଆସୁଛ କାହିଁକି ?

ପାଣୌ ମା କୁରୁ ଚୂତଶାୟକମମୁଂ ମା ଚାପମାରୋପୟ
କ୍ରୀଡ଼ାନିର୍ଜ୍ଜିତବିଶ୍ୱମୂର୍ଚ୍ଛିତଜନାଘାତେନ କିଂ ପୌରୁଷମ୍ ।
ତସ୍ୟା ଏବ ମୃଗୀଦୃଶୋ ମନସିଜପ୍ରେଙ୍ଖତ୍‌କଟାକ୍ଷାଶୁଗ-
ଜ୍ୱାଳାଜର୍ଜ୍ଜରିତଂ ମନାଗପି ମନୋ ନାଦ୍ୟାପି ସଂଧୁକ୍ଷତେ । ୪ ।

ପଦ୍ୟ – ଶୁଣ ରାୟ ମନମଥ ! ତନୁ ଅତି ଅଶକତ,
କ୍ରୂର ଶର ଚାପେ ଆଉ ନମାର ମୋତେ ।
ଲୀଳାଏ ଜିଣି ସଂସାର ତ୍ରୈଲୋକ୍ୟେ ଗରିମା ଯା'ର,
ମୋହ ଗଲା ପ୍ରାଣୀ ମାରି କି ଯଶ ତୋତେ ।
ମୃଗାକ୍ଷୀର କଟାକ୍ଷ ବାଣ, ଶରୀରେ ପଡ଼ି ଜର୍ଜ୍ଜର ହେଉଛି ପ୍ରାଣ ।।

ଗଦ୍ୟ – ହେ ମନସିଜ କାମଦେବ ! ଏହି ଆମ୍ର ମଞ୍ଜରୀ ରୂପକ ବାଣଟିକୁ (ଆମ୍ରବଉଳ, ପଦ୍ମ, ଅଶୋକ, ନୂଆମଲ୍ଲୀ ବା ମାଧବୀ ଓ ରକ୍ତକଇଁ, ଏହି ପାଞ୍ଚଗୋଟି କାମଦେବଙ୍କର ପଞ୍ଚଶର ରୂପେ ଖ୍ୟାତ) ଆଉ ତୁମ ଫୁଲଧନୁରେ ଚଢ଼ାଇ ହସ୍ତରେ ଧାରଣ କରନାହିଁ । ଯେଉଁ ମଦନ ଅବଲୀଳାକ୍ରମେ ବିଶ୍ୱ-ଜନମାନଙ୍କୁ ଜୟ କରିବାରେ ସମର୍ଥ, ସେପରି ଧୁରନ୍ଧର ବୀର ଗୋଟିଏ ମୂର୍ଚ୍ଛିତ ଜନକୁ ଆଘାତ ଦେବାରେ ପୌରୁଷ କ'ଣ ? କାରଣ ମୋର ସେହି ପ୍ରଣୟିନୀ ଶ୍ରୀରାଧାଙ୍କ ମନରେ ସପତ୍ନୀଜନିତ ଯେଉଁ ଜ୍ୱାଳା ପ୍ରଜ୍ୱଳିତ ହେଉଛି, ସେହି ଜ୍ୱାଳାମିଶ୍ରିତ କଟାକ୍ଷର ଉତ୍ତାପରେ ଦଗ୍‌ଧହୋଇଥିବା ମୋର ଶରୀର ଅଦ୍ୟାପି ସୁସ୍ଥ ହୋଇନାହିଁ । ସେପରି ପରିସ୍ଥିତିରେ ଜଣେ ମୃତବତ୍-ଜନକୁ ତୁମେ ଆଘାତ କାହିଁକି ଦେଉଛ ? ଏଥିରେ ତୁମକୁ କେଉଁ ପୌରୁଷ ମିଳିବ ?

ଭ୍ରୂଚାପେ ନିହିତଃ କଟାକ୍ଷବିଶିଖୋ ନିର୍ମାତୁ ମର୍ମବ୍ୟଥାଂ
ଶ୍ୟାମାତ୍ମା କୁଟିଳଃ କରୋତୁ କବରୀଭାରୋଽପି ମାରୋଦ୍ୟମମ୍ ।
ମୋହଂ ତାବଦୟଂ ଚ ତନ୍ୱି ତନୁତାଂ ବିମ୍ବାଧରୋ ରାଗବାନ୍-
ସଦ୍‌ବୃତ୍ତଃ ସ୍ତନମଣ୍ଡଳସ୍ତବ କଥଂ ପ୍ରାଣୈର୍ମମ କ୍ରୀଡ଼ତି । ୫ ।

ପଦ୍ୟ – ଶୁଣ ତୁ କହଇ ସଖି ! ଅକଳଙ୍କ ଶଶୀମୁଖି !
ଭ୍ରୂଲତା ତୋ' ଫୁଲଧନୁ ନୟନଶର ।
ସେ ମୋର ମରମ ସ୍ଥାନେ ପୀଡୁଅଛି ଅନୁକ୍ଷଣେ,
କୁଟିଳ କବରୀ ଜୀବ ଘେନିବ ମୋର ।
କ୍ରୂରଜନ ଏସନ ରୀତି, ଭ୍ରୂଲତା ଅପାଙ୍ଗ ବକ୍ର ସ୍ୱଭାବ ଗତି ।।
ସୁରଙ୍ଗ ଅଧର ତୋର ପକ୍ୱବିମ୍ବଫଳାକାର,
ସ୍ୱଭାବ ରଙ୍ଗ ତାହାର ବହିଣ ଅଛି ।
ସଦବୃତ୍ତ କୁଚ଼ଭାର ଚାରୁ ଏ ସରସଧାର,
ଏ କି କେ ମୋହର ମର୍ମସ୍ଥଳ ଦହୁଛି ।
କୃପା ମୋରେ କର ସୁକେଶି !
ମଜ୍ଜି ମଦନ-ନଦୀରେ ଯାଉଛି ଭାସି ।।

ଗଦ୍ୟ – ହେ ସୁନ୍ଦରୀ ରାଧିକେ ! ତୁମ ଭ୍ରୂକୁଟି ରୂପକ ଧନୁରେ କଟାକ୍ଷ ରୂପକ ଶର ଆରୋପିତ ହୋଇ ମୋ' ମର୍ମସ୍ଥଳରେ ବ୍ୟଥା ଜାତ କରାଉ, ଏଥିରେ ମୋର ଆପତ୍ତି ନାହିଁ । କାରଣ ଧନୁର୍ଗୁଣରେ ଶର ବସିଲେ ତାହା ଅନ୍ୟର ପ୍ରାଣଘାତକ ହୋଇଥାଏ । ତୁମର ଯେଉଁ କୃଷ୍ଣବର୍ଣ୍ଣ କବରୀଭାରର କୁଟିଳତା ମୋତେ ବଧ କରିବା ପାଇଁ ଉଦ୍ୟମ କରୁ, ଏଥିରେ ବି ମୋର ଆପତ୍ତି ନାହିଁ । ଆହୁରି ମଧ ଲାଲରଙ୍ଗରେ ରଞ୍ଜିତ ବିମ୍ବଫଳ ସଦୃଶ ତୁମର ଅଧର ମୋ' ମନରେ ମୋହ ଜାତ କରାଉ, ଏଥିରେ ବି ମୋର କିଛି

ଆପତ୍ତି କରିବାର ନାହିଁ । କିନ୍ତୁ ତୁମର ବର୍ତ୍ତୁଳ ସ୍ତନ ଯୁଗଳ କାହିଁକି ଯେ ମୋର ପ୍ରାଣ ହରଣ କରିବା ପାଇଁ ମୋ' ମନରେ ଖେଳ ଲଗାଇଛି, ମୁଁ ଆଦୌ ଜାଣିପାରୁନାହିଁ ।

**ତାନି ସ୍ପର୍ଶସୁଖାନି ତେ ଚ ତରଳାଃ ସ୍ନିଗ୍ଧା ଦୃଶୋର୍ବିଭ୍ରମା**
**ସ୍ତଦ୍‌ବକ୍ତ୍ରାମ୍ବୁଜସୌରଭଂ ସ ଚ ସୁଧାସ୍ୟନ୍ଦୀ ଗିରାଂ ବକ୍ରିମା ।**
**ସା ବିମ୍ବାଧରମାଧୁରୀତି ବିଷୟା ସଙ୍ଗେଽପି ଚେନ୍ମାନସମ୍,**
**ତସ୍ୟାଂ ଲଗ୍ନସମାଧି ହନ୍ତ ବିରହବ୍ୟାଧିଃ କଥଂ ବର୍ଦ୍ଧତେ । ୬ ।**

ପଦ୍ୟ — ପୁନରପି ବୋଲୁଛନ୍ତି ଚତୁର୍ଦ୍ଦଶ-ଲୋକପତି,
ରାଧା ତୁଲେ ପୂର୍ବେ କ୍ରୀଡ଼ା କରିଛି ମୁହିଁ ।
ସ୍ପରଶନେ କୁଚ଼ଭାର ଆଲିଙ୍ଗନେ ତନୁବର,
ଯେତେ ସୁଖ ରତିପତି । ଅଛି ମୁଁ ଲିହି ।
ଚଞ୍ଚଳ ତା' ତରଳ ଆଖି,
ଅପାଙ୍ଗେ ଚାହିଁଲେ କାମେ ହୁଅଇ ଦୁଃଖୀ ।।
ଦେଖିଣ ତାପ ମୋହର ପ୍ରିୟାର ମନେ କାତର,
ଭୁଜେ ଭିଡ଼ି ଆଲିଙ୍ଗନ ଚୁମ୍ବନ ଦେଇ ।
ତେଣୁ ସେ ମଦନଜ୍ୱର ଶରୀରେ ନ ରହେ ମୋର,
ସୁଖ ଜଳଧି ମଧ୍ୟରେ ମଜ୍ଜଇ ମୁହିଁ ।
ମୁଖ ତା'ର ପଦ୍ମସୁବାସ,
ଭୃଙ୍ଗପ୍ରାୟେ ମନ ମୋର ନ ଛାଡେ ପାଶ ।।
ମନ୍ଦ ହାସ ବକ୍ରବାଣୀ ପୀୟୂଷ ପୂରିତ ଜାଣି,
ଶ୍ରବଣେ ଶୁଣନ୍ତେ ଚିତ୍ତ ପ୍ରମୋଦ ବହେ ।
ବିମ୍ବାଧରୁ ମଧୁପାନେ ତୋଷ ଅତି ମୋର ମନେ,
ବିଷୟ ବିଳାସ ଯେତେ ଆନନ୍ଦମୟେ ।
ତାହା ସଙ୍ଗେ କରିଛି ଭୋଗ,
କେସନେ ବଢ଼ଇ ଏବେ ବିରହରୋଗ ।।

ଗଦ୍ୟ — କନ୍ଦର୍ପକୁ ସାକ୍ଷ୍ୟକରି ଶ୍ରୀକୃଷ୍ଣ କହୁଛନ୍ତି — ହେ କନ୍ଦର୍ପ, ଶ୍ରୀରାଧାଙ୍କ ଶରୀରକୁ ଆଲିଙ୍ଗନ କରିବା ଫଳରେ, ମୋ' ଦେହ ସ୍ପର୍ଶସୁଖ ଅନୁଭବ କରିଛି । ଶ୍ରୀରାଧାଙ୍କର ନୟନଯୁଗଳର କଟାକ୍ଷ ଚାହାଣିକୁ ମୋ' ନେତ୍ର ପ୍ରତ୍ୟକ୍ଷ କରିଛି । ତାଙ୍କ ମୁଖପଦ୍ମର ସୁଗନ୍ଧ ମୋ' ନାସିକା ଭଲଭାବରେ ଆଘ୍ରାଣ କରିଛି । ତାଙ୍କ ବିମ୍ବାଧରର ମାଧୁରୀ ମୋ' ରସନା (ଜିହ୍ୱା )କୁ ତୃପ୍ତ କରିଛି । ତାହାଙ୍କର ଅମୃତପରି ରସମୟୀ ବକ୍ରୋକ୍ତି ପୂର୍ବରୁ ମୋ'

କର୍ଣ୍ଣଯୁଗଳ ଶୁଣିଛନ୍ତି । ଏ ସମସ୍ତ ବିଷୟଲାଭ ପୂର୍ବରୁ ହୋଇଥିଲେହେଁ, ବର୍ତ୍ତମାନ ତାଙ୍କଠାରେ ଏକଲୟରେ ମୋ' ମନଲାଖି ରହି, ମୋର ବିରହରୂପକ ବ୍ୟାଧିକୁ ବଢ଼ାଉଛି କାହିଁକି ?

ଭ୍ରୂପଲ୍ଲବଂ ଧନୁରପାଙ୍ଗତରଙ୍ଗିତାନି ବାଣା ଗୁଣଃ ଶ୍ରବଣପାଳିରିତି ସ୍ମରେଣ ।
ତସ୍ୟାମନଙ୍ଗଜୟଜଙ୍ଗମଦେବତାୟାମସ୍ତ୍ରାଣି ନିର୍ଜ୍ଜିତଜଗନ୍ତି କିମର୍ପିତାନି । ୭ ।

ପଦ୍ୟ – ଭ୍ରୂଲତା କାର୍ମୁକ ତା'ର ନୟନ ଅନଙ୍ଗଶର, ସଜନୀ ଶ୍ରବଣଯାଏଁ ଅଞ୍ଜନ ରେଖା ।
ଜଗତ ଜିଣି ମଦନ ବିବିଧ ଆୟୁଧମାନ, ରାଧିକାର ତହିଁ ଥୋଇ କରିଛି ଶିକ୍ଷା ।
ଆଶ୍ରେ କରିଅଛି ତାହାକୁ, ତ୍ରିଭୁବନେ ସମ ଆଉ ନାହିଁ ଯାହାକୁ ।।

ଗଦ୍ୟ – ହେ କାମଦେବ, ଜଗତକୁ ଜୟ କରିପାରୁଥିବା ଭଳି ଯେଉଁ ଅସ୍ତ୍ରଶସ୍ତ୍ର ସମୂହ ରହିଛି, ସେହି ଅସ୍ତ୍ରଗୁଡ଼ିକ ତୁମେ ଶ୍ରୀରାଧାଙ୍କଠାରେ ଅର୍ପଣ କରିଛ ବୋଲି ମୁଁ ମନେକରୁଛି । ଶ୍ରୀରାଧାଙ୍କ ଭ୍ରୂପଲ୍ଲବକୁ ଧନୁ, ଚଞ୍ଚଳ କଟାକ୍ଷରୂପକ ବାଣ, କର୍ଣ୍ଣଲତିକା ହେଉଛି ଧନୁର ଗୁଣ । ଏହି ଅସ୍ତ୍ରଗୁଡ଼ିକ ବୋଧହୁଏ, ମୋତେ ଜୟ କିରବା ପାଇଁ ତୁମେ ରାଧାଙ୍କଠାରେ ଅର୍ପଣ କରିଛ !

ଇତିଶ୍ରୀ ଉତ୍କଳୀୟ କବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ
ମୁଗ୍ଧମଧୁସୂଦନୋ ନାମ ଦ୍ବିତୀୟଃ ସର୍ଗଃ ।

□□□

# ଚତୁର୍ଥସର୍ଗ

**ଯମୁନାତୀରବାନୀରନିକୁଞ୍ଜେ ମନ୍ଦମାସ୍ଥିତମ୍**
**ପ୍ରାହ ପ୍ରେମଭରୋଦ୍‌ଭ୍ରାନ୍ତଂ ମାଧବଂ ରାଧିକାସଖୀ । ୧ ।**

ପଦ୍ୟ – ଯମୁନାତୀର ବେତସକୁଞ୍ଜେ ମୁରାରି । ରାଧିକାର ସ୍ନେହଭାବ ମନେ ସୁମରି ॥
ବିରହ ତାପରେ ଅତି ବିଷାଦ ହୋଇ । ବସିଛନ୍ତି ଯଦୁପତି ଶିର ନୁଆଇଁ ॥
ଏସନ ସମୟେ ଆସି ମିଳେ ସଜନୀ । ରାଧାର ବିରହ ଯେତେ କହଇ ଘେନି ॥

ଗଦ୍ୟ – ଅତ୍ୟନ୍ତ ପ୍ରେମ ଓ ସ୍ନେହରେ ଉଦ୍‌ବିଗ୍ନମନା ହୋଇ ବେତସକୁଞ୍ଜରେ ଶ୍ରୀରାଧାଙ୍କ ମାନଭଞ୍ଜନ ଲାଗି କ୍ଷୁନ୍ନ ହୋଇ ବସିଥିବା ମାଧବ ଶ୍ରୀକୃଷ୍ଣଙ୍କୁ ଦେଖି ଶ୍ରୀରାଧାଙ୍କ ପ୍ରିୟସଖୀ ତାଙ୍କୁ କହିଥିଲେ –

*[କର୍ଣ୍ଣାଟରାଗେଣ ଗୀୟତେ । ( ଏକତାଳୀ ତାଳାଭ୍ୟାଂ ଗୀୟତେ ) (ଗୀତ-୧)]*

**ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରମ୍**
**ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରମ୍ ।**
**ସା ବିରହେ ତବ ଦୀନା,**
**ମାଧବ, ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା । (କ) । ଧ୍ରୁବମ୍ ।**

ପଦ୍ୟ – ଶୁଣ ତୁ ମାଧବ ! ମୋର ରାଧିକାସଖୀ । ତୋହରି ବିରହେ ଅତି ହୋଇଛି ଦୁଃଖୀ ॥
ମନ୍ମଥଶର ଭୟରେ ଆରତ ହୋଇ । ଭାବଇ ଚୈତନ୍ୟମନ ତୋତେ ହିଁ ଦେଇ ॥
ନିନ୍ଦଇ ଚନ୍ଦନ ଚନ୍ଦ୍ରକିରଣ ଚାହିଁ । ଅତିତାପେ ମନେ ଧଇର୍ଯ୍ୟ ନ ଧରଇ ॥
ମଳୟ ପବନ ଲାଗି ମୋ ସଖୀ ଦେହ । ଗରଳ ଜ୍ୱାଳାର ପ୍ରାୟ କରଇ ଦାହ ॥
ବିଚାରଇ ସଖୀ ସେ ଚନ୍ଦନ କନ୍ଦର । କାଳସର୍ପ ସଦନ ତହିଁର ଉପର ॥
ତା'ର ବିଷଜ୍ୱାଳା ଘେନି ବହୁଛି ଏହି । ତେଣୁ ସେ ଜୀବନ ମୋର ଦେଉଛି ଦହି ॥

ଗଦ୍ୟ – ହେ ମାଧବ, ତୁମ ବିରହବେଦନାରେ ତଥା କାମଦେବଙ୍କ ପଞ୍ଚବାଣରେ ପୀଡ଼ିତାହୋଇ ଶ୍ରୀରାଧା ଅତ୍ୟନ୍ତ ଶୀତଳ ଚନ୍ଦନ ପ୍ରଲେପକୁ ନିନ୍ଦାକରୁଛି । ଶରୀରର ତାପ ଦୂରକାରୀ ଚନ୍ଦ୍ରକିରଣକୁ ମଧ ଚାହିଁ ଦୁଃଖରେ ବ୍ୟାକୁଳ ହେଉଛି । ସୁଗନ୍ଧ ତଥା ଶୀତଳ ମଳୟ ପବନକୁ ବିଷ ବୋଲି ମନେକରୁଛି । କାରଣ ବିଷଧର ସର୍ପଙ୍କ ନିଃଶ୍ୱାସ ପବନ ସେଥିରେ ମିଳିତ ହୋଇଛି ବୋଲି ଭାବି ସୁଗନ୍ଧଯୁକ୍ତ ତଥା ମୃଦୁମନ୍ଦ ମଳୟ ପବନକୁ ବିଷଜ୍ୱାଳା ପରି ଅନୁଭବ କରୁଛି । ସେ ବିଚାରୀ ହୃଦୟ-ମନ୍ଦିରରେ ମଦନ-ସୁନ୍ଦର ମୂର୍ତ୍ତିକୁ ପ୍ରତିଷ୍ଠା କରି ତୁମରି ଭାବରେ ତଲ୍ଲୀନା ହୋଇପଡ଼ିଛି ।

ଅବିରଳନିପତିତମଦନଶରାଦିବ ଭବଦବନାୟ ବିଶାଳମ୍ ।
ସ୍ୱହୃଦୟମର୍ମଣି ବର୍ମ୍ମ କରୋତି ସଜଳନଳିନୀଦଳଜାଳମ୍ । (ଖ)

ପଦ୍ୟ – ମନସିଜ ଶର ପଡେ ଅନବରତ । ସଖୀର ମରମସ୍ଥାନେ ହୃଦୟଗତ ।।
ତେଣୁ ସେ ଜଳମିଶ୍ରିତ ପଙ୍କଜ ଦଳେ । ଘୋଡ଼ାଇ ରଖେ ଯତନେ କୁଚମଣ୍ଡଳେ ।।
ଯହୁଁ ସେ ହୃଦରେ ତୋତେ ଅଛଇ ଧରି । କାମଶର ନିବାରଣେ କବଚ କରି ।।

ଗଦ୍ୟ – ହେ ମାଧବ, ରାଧିକା ତୁମକୁ ତା'ର ହୃଦୟ-ମନ୍ଦିରରେ ସାଇତି ରଖିଛି । କିନ୍ତୁ ନିଷ୍ଠୁର କାମଦେବ ସର୍ବଦା କାମଶରମାନଙ୍କଦ୍ୱାରା ପ୍ରହାର କରୁଥିବାରୁ, କାଳେ ତୁମର କିଛି ଅନିଷ୍ଟ ହେବ, ସେହି ଆଶଙ୍କାରେ ନିଜ ହୃଦୟର ମର୍ମସ୍ଥଳକୁ ରକ୍ଷାକରିବା ପାଇଁ ବଡ଼ ବଡ଼ ପଦ୍ମପତ୍ରକୁ ଜଳରେ ବୁଡ଼ାଇ ତାହାକୁ କବଚ ସଦୃଶ ବ୍ୟବହାର କରୁଛି । ଅର୍ଥାତ୍ ତୁମ ବିରହରେ ଉଚ୍ଛନ୍ନ ହୋଇ ରାଧା ଯେଉଁ ସନ୍ତାପ ଅନୁଭବ କରୁଛି, ସେଥିରୁ ରକ୍ଷା ପାଇବା ପାଇଁ ସେ ନଳିନୀଦଳକୁ ବକ୍ଷରେ ଥୋଇ ଶୀତଳତା ଅନୁଭବ କରିବା ପାଇଁ ଚେଷ୍ଟା କରୁଛି ।

କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟମ୍
ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟମ୍ । (ଗ)

ପଦ୍ୟ – ଜାଣଇ ପୁଷ୍ପସକଳ ମଦନଶର । ତଥାପି ବିଚିତ୍ର ଫୁଲେ ତଳପ ତା'ର ।।
କେବଳ ତୁମ୍ଭ ଆଗମେ କରି ଭରସା । ଜୀବନ ଧାରଣେ ସଖୀ ବଳାଇ ଆଶା ।।
ସନ୍ତାପ ହୃଦେ ବିଳପେ ସଖୀ ମୋହର । ବ୍ରତ ଆଚରଣ କଲା ଦୃଢ଼ ମନର ।।
ତବ ଆଲିଙ୍ଗନ ସୁଖ ବାଞ୍ଛଇ ମନ । ଶୋଇଛି କୁସୁମ ଶେଯେ ବାଳା ରତନ ।।

ଗଦ୍ୟ – ହେ ମାଧବ, କାଳେ ତୁମେ କେତେବେଳେ ଆସି ପହଞ୍ଚିଯିବ, ସେଥିପାଇଁ ବିରହିଣୀ ଶ୍ରୀରାଧା ଅନେକ ପ୍ରକାର ମନୋଜ୍ଞ କୁସୁମ ସମୂହରେ ଶଯ୍ୟା ପ୍ରସ୍ତୁତ କରି ଶୋଇରହୁଛି । ଆହୁରି ମଧ ସେ ଭଲଭାବରେ ଜାଣେ– ଅଶୋକ ଅରବିନ୍ଦ ଆଦି କୁସୁମମାନ କାମଦେବର ଶର; ତଥାପି ସେ ତୁମକୁ ପାଇବା ପାଇଁ ଏବଂ ତୁମ ଆଲିଙ୍ଗନ ସୁଖ ପାଇବା ଆଶାରେ ତୁମରି ଉଦ୍ଦେଶ୍ୟରେ ବ୍ରତପାଳନପୂର୍ବକ ଶରଶଯ୍ୟା କରି ଶୋଉଛି ।

ବହତି ଚ ବିଗଳିତ ବିଲୋଚନଜଳଧରମାନନକମଳମୁଦାରମ୍ ।
ବିଧୁମିବ ବିକଟବିଧୁନ୍ତୁଦଦନ୍ତଦଳନଗଳିତାମୃତଧାରମ୍ । (ଘ)

ପଦ୍ୟ – ବହଇ ଉଦାର ସଖୀ ମୁଖକମଳ । ଲୋଚନୁ ଜଳ ବରଷେ କି ଜଳଧର ।।
ରାହୁଗ୍ରାସ ଦନ୍ତାଘାତେ ଚନ୍ଦ୍ର ଯେସନ । ଝରଇ ଅମୃତଧାରା ଜାଣି ତେସନ ।।

**ଗଦ୍ୟ** – ହେ ମାଧବ, ତୁମେ କାଳେ କେଉଁ ଦିଗରୁ ଆସୁଥିବ, ସେଇଥିପାଇଁ ସେହି ଆଡ଼କୁ ଚାହିଁ ଚାହିଁ ରାଧାଙ୍କ କୋମଳ ମୁଖକମଳରେ ଥିବା ଜଳଧର ସଦୃଶ ଲୋଚନ ଯୁଗଳରୁ ଅନବରତ ଅଶ୍ରୁଧାର ବହିବାରେ ଲାଗିଛି । ରାହୁର ବିକଟ ଦନ୍ତଘାତ ଯୋଗୁ ବିଦଳିତ ହୋଇଥିବା ଚନ୍ଦ୍ରଖଣ୍ଡରୁ ଅମୃତଧାର ବହିଗଲା ପରି ତୁମରି ପାଇଁ ଅଶ୍ରୁମୁଖୀ ରାଧା ସର୍ବଦା ଅଶ୍ରୁବର୍ଷଣ କରିଚାଲିଛି ।

**ବିଲିଖତି ରହସି କୁରଙ୍ଗମଦେନ ଭବନ୍ତମସମଶରଭୂତମ୍ ।**
**ପ୍ରଣମତି ମକରମଧୋ ବିନିଧାୟ କରେ ଚ ଶରଂ ନବଚୂତମ୍ । (ଙ)**

**ପଦ୍ୟ** – ଏକାନ୍ତେ କସ୍ତୁରୀ କରେ ଘେନିଣ ସଖୀ । ଲିହଇ ମଦନରୂପ ଅତି ସୁରେଖି ।।
ମକର ଯାନ ଗୋଟିଏ ଯତନେ ଲିହି । କରେଣ ଚୂତବକୁଳ ଶରେକ ଦେଇ ।।
ଅନଙ୍ଗ ମୂରତି ତୋତେ ଅଭିନ୍ନ କରି । ଚରଣେ ପଡ଼ି ବୋଲଇ ଶରଣ ହରି ।।

**ଗଦ୍ୟ** – ହେ ମାଧବ, ମୋ' ପ୍ରାଣପ୍ରିୟା ସଖୀ ରାଧିକା ଏକାନ୍ତ ସ୍ଥାନରେ ବସି କସ୍ତୁରୀରେ ତୁମକୁ କାମଦେବ ବୋଲି ମନେକରି ତୁମରି କମନୀୟ ରୂପ ଲେଖନ କରୁଛି । କାମଦେବର ଯେପରି ମକର ବାହନ ଓ ନବପଲ୍ଲବ ଯୁକ୍ତ ଶରତୁଲ୍ୟ ଚୂତମଞ୍ଜରୀ ହସ୍ତରେ ଥାଏ; ସେହିପରି ତୁମ ଚିତ୍ର ତଳେ ମକରଟିଏ ଲେଖିବା ସଙ୍ଗେ ସଙ୍ଗେ ହସ୍ତରେ ନବଚୂତଶର ଦେଇ ବାରମ୍ବାର ଆତ୍ମରକ୍ଷା ନିମିତ୍ତ ପ୍ରଣାମ କରୁଛି । କାମପୀଡ଼ାରୁ ରକ୍ଷା ପାଇବା ପାଇଁ ବିରହିଣୀମାନେ ଯେପରି କାମଦେବଙ୍କୁ ବାହନ ଓ ଆୟୁଧ ସହିତ ପୂଜା କରନ୍ତି, ସେହିପରି ଶ୍ରୀରାଧା ତୁମରି ଅର୍ଚ୍ଚନା କରିବାରେ ଲାଗିଛି ।

**ପ୍ରତିପଦମିଦମପି ନିଗଦତି ମାଧବ ତବ ଚରଣେ ପତିତାହମ୍ ।**
**ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି ତନୁତେ ତନୁଦାହମ୍ । (ଚ)**

**ପଦ୍ୟ**–ପୁଣ ପୁଣ ପାଦେ ପଡ଼ି ବୋଲଇ ବାମା ।
ତୋର ବିନୁ ମୋର ତନୁ ଦହେ ଚନ୍ଦ୍ରମା ।।
ତୁମ୍ଭ ବିମୁଖରୁ ହେଲିଣି ଏତେ ସରି । ସୁଧାନିଧି କିମ୍ପା ମୋତେ ମାରନ୍ତା ଜାଳି ।।
ବିଚ୍ଳିତ ହୋଇ ସଖୀ ଭାଷେ ଏସନ । ଉଦ୍ଧର କାମଜ୍ୱାଳାରୁ ଧରେ ଚରଣ ।।

**ଗଦ୍ୟ** – ହେ ମାଧବ, ମୋ' ସଖୀ ପ୍ରତିକ୍ଷଣ ବିଚ୍ଳିତ ହେଲା ପରି କହୁଛି – ହେ ମାଧବ, ମୁଁ ତୁମ ପାଦରେ ପଡୁଛି, ତୁମେ ମୋତେ ଏ କାମଜ୍ୱାଳାରୁ ଉଦ୍ଧାର କର । ତୁମେ ବିମୁଖ ହୁଅନ୍ତେ ଅମୃତମୟ ଶୀତଳତା ପ୍ରଦାନକାରୀ ଚନ୍ଦ୍ର ମଧ୍ୟ ଅନବରତ ମୋ' ଦେହକୁ ଜାଳିପୋଡ଼ି ଛାରଖାର କରିଦେଉଛି ।

**ଧ୍ୟାନଲୟେନ ପୁରଃ ପରିକଳ୍ପ୍ୟ ଭବନ୍ତମତୀବ ଦୁରାପମ୍ ।**
**ବିଲପତି ହସତି ବିଷୀଦତି ରୋଦିତୀ ଚ଼ଞ୍ଚତି ମୁଞ୍ଚତି ତାପମ୍ । (ଛ)**

ପଦ୍ୟ—ଧ୍ୟାନରେ ଅଗ୍ରତେ ତୋତେ ଉଭା କରାଇ ।
ବିଷଣ୍ଣ ହୋଇଣ ପୁଣ ପୁଣ ହସଇ ॥
ଚାହିଁଲେ ନ ଦେଖି ଚଇତନ୍ୟ ହରାଇ । ବିଳାପ ବଚନ କହେ ଦୁଃଖିତା ହୋଇ ॥
କ୍ଷଣେ କ୍ଷଣେ ରୋଦନ ସେ କରଇ ସହୀ । କ୍ଷଣକେ ଛାଡ଼ଇ ତାପ ଧୈର୍ଯ୍ୟ ହରାଇ ॥

ଗଦ୍ୟ — ହେ ମାଧବ, ମୁନିଜନମାନଙ୍କଦ୍ୱାରା ଅତ୍ୟନ୍ତ ସାଧନାରେ ପ୍ରାପ୍ତ ଯେ ତୁମେ, ରାଧା ତୁମକୁ କେବଳ ଧ୍ୟାନଲୟରେ ପରିକଳ୍ପନା କରି କେତେବେଳେ ବିଳାପ କରି ତୁମ ଉଦ୍ଦେଶ୍ୟରେ ଏଣୁତେଣୁ କହୁଛି । ଧ୍ୟାନଲୟରେ ତୁମକୁ ଧରି ପାରିଛି ବୋଲି ଭାବି ହସୁଛି; କିନ୍ତୁ ଆଲିଙ୍ଗନ ଚୁମ୍ବନ ଆଦି କରିପାରୁ ନଥିବାରୁ ଅତ୍ୟନ୍ତ ଦୁଃଖ ପ୍ରକାଶ କରୁଛି । ତୁମକୁ କିପରି ବଶ କରିପାରିବ, ତା'ର ଉପାୟ ଚିନ୍ତା କରି ନପାରି ବିକଳରେ ରୋଦନ କରୁଛି । ଧ୍ୟାନଲୟରେ ତୁମକୁ ଦେଖୁଥିଲେ ମଧ୍ୟ ତୁମକୁ ସ୍ପର୍ଶ କରି ପାରୁନଥିବାରୁ, ଏଣେ ତେଣେ ଧାଇଁବାରେ ଲାଗିଛି ଏବଂ ପରିଶେଷରେ ନିରୁପାୟ ହୋଇ ଦୀର୍ଘନିଃଶ୍ୱାସ ତ୍ୟାଗକରି ଅନ୍ତର୍ଜ୍ୱାଳା ସହ୍ୟ କରୁଛି ।

**ଶ୍ରୀଜୟଦେବଭଣିତମିଦମଧିକଂ ଯଦି ମନସା ନଟନୀୟମ୍**
**ହରିବିରହାକୁଳବଲ୍ଲବଯୁବତିସଖୀବଚନଂ ପଠନୀୟମ୍ । (ଛ)**

ପଦ୍ୟ — ରାଧାର ବିରହ ଚିନ୍ତା ଦୂତିକାବାଣୀ । କୃଷ୍ଣରେ କହିଲା ଜୟଦେବ ଯା' ଭଣି ॥
ମାନସଧିଆନେ ଜୟଦେବଙ୍କ ବାଣୀ । ଗୁଣି ଗୁଣି ତରିଯା'ନ୍ତି ମହତ ପ୍ରାଣୀ ॥

ଗଦ୍ୟ— ହେ ଭକ୍ତଜନମାନେ, ତୁମେମାନେ ଯଦି ଶ୍ରୀଜୟଦେବଙ୍କ ବିରଚିତ ଏହି ଗୀତଗୋବିନ୍ଦର ପଦାବଳୀକୁ ସ୍ମୃତିପଟଳରେ ସର୍ବଦା ନୃତ୍ୟକରାଇବାକୁ ଚାହୁଁଥାଅ, ଅର୍ଥାତ୍ ଜୟଦେବ କବିରାଜଙ୍କ କାନ୍ତ କୋମଳ ସରସ ପଦାବଳୀକୁ ଯଦି ସତତ ଜିହ୍ୱାଗ୍ରରେ ନର୍ତ୍ତନ କରାଇବାକୁ ଚାହୁଁଥାଅ, ତେବେ ଶ୍ରୀକୃଷ୍ଣଙ୍କ ବିରହରେ ଆକୁଳ ହୋଇଥିବା ଗୋପଯୁବତୀ ଶ୍ରୀରାଧାଙ୍କ ସଖୀର ସୁମଧୁର ବଚନକୁ ମନଦେଇ ପାଠକର ।

**ଆବାସୋ ବିପିନାୟତେ ପ୍ରିୟସଖୀମାଳାପି ଜାଲାୟତେ**
**ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳାକଳାପାୟତେ ।**
**ସାପି ତ୍ୱଦ୍‌ବିରହେଣ ହନ୍ତ ହରିଣୀରୂପାୟତେ ହା କଥମ୍**
**କନ୍ଦର୍ପୋଽପି ଯମାୟତେ ବିରଚୟଞ୍ଛାର୍ଦ୍ଦୂଳବିକ୍ରୀଡ଼ିତମ୍ । ୨ ।**

ପଦ୍ୟ— ତୋହର ବିରହେ କ୍ଷୀଣ ବିଚ୍ଛିନ୍ନ ଅତି । ଘାଉଆ ହରିଣୀ ପ୍ରାୟେ ହୁଏ ଯୁବତୀ ॥
ଗୃହକୁ ଅରଣ୍ୟ ପ୍ରାୟ ମଣଇ ସଖୀ । ଜାଲମାଳା କିଏ ବେଢ଼ି ବସିଲେ ଯୋଖି ॥
ନିଃଶ୍ୱାସ ପବନ ତା'ର ତାପଇ କାୟେ । ଦାବଅଗ୍ନିଜ୍ୱାଳା ପ୍ରାୟେ କରଇ ଭୟେ ॥
ମଦନ କିରାତବାଣ କାଳ ତାହାକୁ । ହରିଣୀ ବିମର୍ଷ ଯେହ୍ନେ ଦେଖି ବ୍ୟାଘ୍ରକୁ ॥

**ଗଦ୍ୟ** – ହେ ମାଧବ, ମୋ ପ୍ରିୟସଖୀ ରାଧିକା ତୁମ ବିରହରେ ନିଜର ବାସଗୃହକୁ ଅରଣ୍ୟ ପରି ମନେକରୁଛି । କାରଣ ପ୍ରିୟତମ ନଥିବାରୁ ବାସଗୃହ ବା ଲତାକୁଞ୍ଜ ଅରଣ୍ୟ ସଦୃଶ ଭୟଙ୍କର ହୋଇଉଠିଛି । ତୁମ ବିରହରେ ରାଧିକା ପ୍ରାଣତ୍ୟାଗ କରିବାକୁ ଗଲାବେଳେ ଅନ୍ୟାନ୍ୟ ସଖିମାନେ ହରିଣୀକୁ ଜାଲପକାଇ ଧରିନେବାପରି ମୃତ୍ୟୁମୁଖରୁ ନିବାରଣ କରୁଥିବାରୁ ସେମାନଙ୍କୁ ସେ ଜାଲବନ୍ଧନ ପରି ମନେକରୁଛି । ତୁମ ବିରହ ଦୁଃଖରେ ଯେଉଁ ଉଷ୍ଣନିଃଶ୍ୱାସ ତ୍ୟାଗ କରୁଛି, ତାହା ବନାଗ୍ନିର ଜ୍ୱାଳା ସମୂହ ପରି ସେ ଅନୁଭବ କରୁଛି ।

ହେ ଶ୍ରୀକୃଷ୍ଣ, ଅତ୍ୟନ୍ତ ଦୁଃଖର ସହିତ ମୁଁ ନିବେଦନ କରୁଛି ଯେ, ତୁମ ବିରହରେ ମୋ' ପ୍ରିୟସଖୀ ରାଧିକା ବନହରିଣୀ ପରି ବ୍ୟାଘ୍ରସଦୃଶ କାମଦେବ ରୂପକ ବ୍ୟାଧ କବଳରେ ପଡ଼ି, ପ୍ରାଣ ବିକଳରେ ନିରୁପାୟ ହୋଇ ଧାଇଁବାରେ ଲାଗିଛି । ବିରହୀ ବିରହିଣୀଙ୍କ ପକ୍ଷରେ ଆନନ୍ଦଦାୟକ ଯେଉଁ ମଦନ ସେ ଏବେ ତା'ଠାରେ ଯମ ପରି କ୍ରୂର ହୋଇଉଠିଛି ।

ବନରେ ଏକାକିନୀ ହରିଣୀ ଯେପରି ବ୍ୟାଧ, ଜାଲ, ଅଗ୍ନିଜ୍ୱାଳା ଓ ବ୍ୟାଘ୍ରସଦୃଶ ଭୟଙ୍କର ଶ୍ୱାନ ଘେର ମଧ୍ୟରେ ଆତ୍ମରକ୍ଷାର କୌଣସି ଉପାୟ ନଦେଖି ଏଣେତେଣେ ଧାଇଁ ନିଜର ଅସମର୍ଥତା ପ୍ରକାଶକରେ, ମୋ' ପ୍ରିୟସଖୀ ରାଧିକାର ଏବେ ସେହି ଦଶା ହୋଇଛି ।

*[ଦେଶାଖ୍ୟ ରାଗେଣ ଗୀୟତେ । (ଏକତାଳୀ ତାଳାଭ୍ୟାଂ ଗୀୟତେ ।) (ଗୀତ–୨)]*

**ସ୍ତନବନିହିତମପି ହାରମୁଦାରମ୍ ସା ମନୁତେ କୃଶତନୁରିବ ଭାରମ୍ ।**
**ରାଧିକା ତବ ବିରହେ କେଶବ । (କ) । ଧ୍ରୁବମ୍ ।**

**ପଦ୍ୟ** – ଶୁଣ ତୁ କେଶବ ରାଧା ତୋହର ବିନୁ ।
ହାଳେ ଅତି କ୍ଷୀଣ ତା'ର ହୋଇଲା ତନୁ ।।
ଅମଳ ମୁକୁତା ହାର କୁଚ ଉପରେ । ବହି ନ ପାରଇ ଗରୁ ହୋଇଛି ତା'ରେ ।।

**ଗଦ୍ୟ** – ହେ ମାଧବ, ତୁମ ବିରହରେ ରାଧିକା ଅଧିକ କ୍ଷୀଣ ହୋଇଯାଇଛି । ତେଣୁ ସଖୀମାନେ ତା' ଗଳାରେ ଯେଉଁ ଉତ୍କୃଷ୍ଟ ହାର ପିନ୍ଧାଇଦେଉଛନ୍ତି, ତାହା ତା'ର ସ୍ତନ ଉପରେ ଲମ୍ବିଯାଇଥିବାରୁ, ସେ ସେହି ଶ୍ରେଷ୍ଠ ମାଳାକୁ ଭାର ସ୍ୱରୂପ ମନେକରୁଛି ।

**ସରସମସୃଣମପି ମଳୟଜପଙ୍କମ୍**
**ପଶ୍ୟତି ବିଷମିବ ବପୁଷି ସଶଙ୍କମ୍ । (ଖ)**

**ପଦ୍ୟ**– ମଳୟ-ଚନ୍ଦନ ପଙ୍କ ଦେଖି ତରୁଣୀ । ଶଙ୍କିତ କରଇ ତନୁ ଗରଳ ମଣି ।।
ତୋ' ବିନୁ ଏ ଦଶା ଭୋଗେ ରମଣୀମଣି ।ହିତକୁ ଅହିତ ପ୍ରାୟେ ନ ଘେନେ ଜାଣି ।।

ଗଦ୍ୟ – ହେ ମାଧବ, ଅତ୍ୟନ୍ତ ଶୀତଳରସଯୁକ୍ତ ସ୍ନିଗ୍ଧ କୋମଳ ତଥା ବିରହ ନିବାରଣରେ ଅତ୍ୟନ୍ତ ହିତକର ମଳୟପର୍ବତରେ ଜାତ ସୁଗନ୍ଧଯୁକ୍ତ ଚନ୍ଦନକୁ ଶରୀରରେ କିଏ ବିଷ ବୋଳିଦେଲା ପ୍ରାୟ ଭୟ କରି, ଭୟ-ବିହ୍ୱଳିତ ନେତ୍ରରେ ସେ ଆଡ଼କୁ ଚାହୁଁଛି । ତୁମରି ବିରହଜ୍ୱାଳାରେ ସଢ଼ି ମୋ' ସଖୀ ରାଧିକାର ଆଜି ଏ ଦଶା ହୋଇଛି ।

ଶ୍ୱସିତପବନମନୁପମପରିଣାହମ୍ ।
ମଦନଦହନମିବ ବହତି ସଦାହମ୍ । (ଗ)

ପଦ୍ୟ – ନିଃଶ୍ୱାସ ପବନ ଅନୁପମ ଶୀତଳ । ତୋର ବିନୁ ଯେସନେ ମଦନ ଅନଳ ॥
ଅନ୍ତରେ କାମ ଅନଳ ଜଳେ ସତତ । ତେଣୁ ଖରଶ୍ୱାସ ସଖୀ ଛାଡେ ନିରତ ॥

ଗଦ୍ୟ – ହେ ମାଧବ, ମୋ' ସଖୀ ରାଧିକାର ନିଃଶ୍ୱାସ ପବନ ଏତେ ଉଷ୍ଣ ଓ ପ୍ରଖର ହୋଇଛି ଯେ, ସେ ତାକୁ କାମାଗ୍ନି ସଦୃଶ ମନେକରୁଛି । ତା'ର ଅନ୍ତରରେ କାମାଗ୍ନି ଉଦ୍ଦୀପିତ ହୋଇଥିବାରୁ, ନିଃଶ୍ୱାସ ପବନ ଅତ୍ୟନ୍ତ ତାପଜନକ ହୋଇଛି । ସେହିପରି ଉଷ୍ଣ ପବନ ବନାଗ୍ନି ପରି ତା' ସମୁଦାୟ ଶରୀରରେ ଖେଳିଯାଇ ତାହାକୁ ଦଗ୍ଧ କରୁଛି ।

ଦିଶି ଦିଶି କିରତି ସଜଳକଣଜାଳମ୍ ।
ନୟନନଳିନମିବ ବିଗଳିତନାଳମ୍ । (ଘ)

ପଦ୍ୟ– ନିରନ୍ତର ଅଶ୍ରୁଜଳ ଗଳଇ ତା'ର । ସକଳ ଦିଗେ ପକାଇ ନୟନୁ ନୀର ॥
ନୀରସ ହୋଇଲା ତା'ର ନୟନ ବେନି । ମୃଣାଳୁ ଖସିଲା ପଦ୍ମ ପାଖୁଡ଼ା ଜାଣି ॥

ଗଦ୍ୟ – ହେ ମାଧବ, ତୁମକୁ ଦେଖିବା ଅଭିଳାଷରେ ଅଶ୍ରୁମୁଖୀ ରାଧିକା ବାରମ୍ବାର ଏଣେତେଣେ ଚାହୁଁଛି । ପଦ୍ମନାଡ଼କୁ ଯେପରି ଜଳରୁ ଉପାଡ଼ି ଆଣିଲେ ସେଥିରୁ ଜଳବିନ୍ଦୁ ଝରିପଡେ, ସେହିପରି କମଳନୟନୀ ରାଧିକା ତୁମ ବିରହ-ଦୁଃଖରେ ଏଣେତେଣେ ଚାହିଁବା ବେଳେ ତା' ନୟନ ଯୁଗଳରୁ ଅଶ୍ରୁକଣିକା ଝରି ଚାରିଆଡ଼କୁ ସିକ୍ତ କରିଦେଉଛି ।

ନୟନବିଷୟମପି କିଶଳୟତଳ୍ପମ୍ ।
କଳୟତି ବିହିତହୁତାଶବିକଳ୍ପମ୍ । (ଙ)

ପଦ୍ୟ – ଆହେ ମାଧବ ! କହଇ ଆହୁରି ଶୁଣ । ବିରହିଣୀ ରାଧିକା ସହଇ କଦନ ॥
ନବୀନ ପଲ୍ଲବ ଶଯ୍ୟା ଦେଖି କାମିନୀ । ଚାହିଁ ନ ପାରଇ କିଏ ଜଳଇ ବହ୍ନି ॥

ଗଦ୍ୟ – ହେ ମାଧବ, ଶ୍ରୀରାଧାର ବିରହ ତାପ ଶାନ୍ତି ନିମିତ୍ତ ସଖୀମାନେ ତା' ପାଇଁ କୋମଳ ତଥା କଅଁଳ ପତ୍ରରେ ଶେଯ ସଜାଡ଼ିଛନ୍ତି । ସେ ତାକୁ ଦେଖି ମଧ୍ୟ ନଦେଖିଲାପରି ଏଡାଇଦେଉଛି । କାରଣ ତୁମ ବିରହରେ ସେହି ନବପଲ୍ଲବ ଶଯ୍ୟା ତାକୁ ଅଗ୍ନିପୂର୍ଣ୍ଣ ତଥା ଅତ୍ୟନ୍ତ ଶରୀରଦାହକାରୀ ଶେଯପରି ମନେହେଉଛି ।

**ତ୍ୟଜତି ନ ପାଣିତଳେନ କପୋଳମ୍**
**ବାଳଶଶିନମିବ ସାୟମଲୋଳମ୍ । (ଚ)**

ପଦ୍ୟ – ଶୁଣ ହେ କେଶବ ! ଦୁଃଖ ଆହୁରି ତା'ର ।
ତୁମ୍ଭ ବିରହେ ସଙ୍ଗ ରମଣୀବର ।।
ବସିଛି କପୋଳେ କର ଦେଇଣ ବାମା । ବଦନ ଦିଶଇ କି ନବୀନ ଚନ୍ଦ୍ରମା ।।
ସନ୍ଧ୍ୟାକାଳେ ଅତି ଦୁଃଖେ ବସି ନିଶ୍ଚଳେ । ଧ୍ୟାନ କରେ ତବ ରୂପ ବସି ଆକୁଳେ ।।

ଗଦ୍ୟ – ହେ କେଶବ, ମୋ' ପ୍ରିୟ ସଖୀ ରାଧିକା ସାରାଦିନ କୌଣସିମତେ ଛଟପଟ ହୋଇ ବିତାଇଦେଇଛି ସିନା, ମାତ୍ର ସନ୍ଧ୍ୟା ଆଗମନ ହେବାମାତ୍ରେ ସାରାରାତି ତୁମ ବିରହରେ କିପରି ଯାପନ କରିବ, ସେହି ଚିନ୍ତାରେ ଘାରିହୋଇ କରତଳରେ ଗଣ୍ଡମଣ୍ଡଳ ଥୋଇ ଗଭୀର ଚିନ୍ତାରେ ନିଷ୍କମ୍ପ ଓ ନିଶ୍ଚଳ ହୋଇ ବସିରହିଛି । ତା'ଫଳରେ ମୋ' ସଖୀ ସନ୍ଧ୍ୟାକାଳର ଦ୍ୱିତୀୟାଚନ୍ଦ୍ର ପରି ଦେଖାଯାଉଛି । ତା'ର କରପଲ୍ଲବ ତାମ୍ରବର୍ଣ୍ଣ ହୋଇଥିବାରୁ ଅନୁରାଗିଣୀ ସନ୍ଧ୍ୟା ପରି ତାହା ମନେହେଉଛି । ସେ ତା'ର ଚନ୍ଦ୍ରବଦନକୁ ଅର୍ଦ୍ଧେକ ପାଣିପଲ୍ଲବରେ ଘୋଡ଼ାଇ ରଖିଥିବାରୁ, ତାହା ବାଳଚନ୍ଦ୍ରମା ପରି ଦେଖାଯାଉଛି । ତୁମରି ଧ୍ୟାନରେ ତଲ୍ଲୀନା ହୋଇଥିବାରୁ ସେ ନିଶ୍ଚଳ ହୋଇଛି । ତେଣୁ ସନ୍ଧ୍ୟାକାଳୀନ ନିଶ୍ଚଳ ବାଳଚନ୍ଦ୍ରମା ପରି ସେ ଶୋଭାପାଉଛି ।

**ହରିରିତି ହରିରିତି ଜପତି ସକାମମ୍**
**ବିରହବିହିତମରଣେବ ନିକାମମ୍ । (ଛ)**

ପଦ୍ୟ – ହରି ହରି ବୋଲି ଜପେ ସକାମ କରି ।
ସୁଫଳ ମିଳିବ ଯେବେ ଆସିବେ ହରି ।।
ନୋହିଲେ ବିରହତାପେ ହୋଇବି ହତ । ନିଷ୍କାମ ହୋଇଣ ଭକ୍ତି ଲଭିବି ମୁଁ ତ ।।

ଗଦ୍ୟ – ହେ କେଶବ, ମରଣ କାଳରେ ମନୁଷ୍ୟ ଯେପରି କେବଳ ହରିନାମ ଜପକରୁଥା'ନ୍ତି, ସେହିପରି ମୋ' ପ୍ରିୟସଖୀ ରାଧିକା କାମବାଣରେ ମୃତତୁଲ୍ୟ ହୋଇ ତୁମ ନାମ – ହରି ହରି, ବୋଲି ଅଭିଳାଷର ସହିତ ଜପ କରିବାରେ ଲାଗିଛି । ସେ ଭଲ ଭାବରେ ଜାଣିସାରିଲାଣି ଯେ, ତୁମ ବିରହରେ ତା'ର ମରଣ ସୁନିଶ୍ଚିତ, ତେଣୁ ବିକଳରେ ତୁମରି ନାମ ଜପ କରିବାରେ ଲାଗିଛି ।

**ଶ୍ରୀଜୟଦେବଭଣିତମିତି ଗୀତମ୍**
**ସୁଖୟତୁ କେଶବପଦମୁପନୀତମ୍ । (ଜ)**

ପଦ୍ୟ – ଶୁଣ ହେ ସୁଜନେ ଜୟଦେବ ଯା' ଭଣି । ବଇକୁଣ୍ଠନାଥ ସୂକ୍ଷ୍ମତତ୍ତ୍ୱ ଏ ବାଣୀ ।।
କେଶବ ପଦ କମଳ ହେବ ପ୍ରାପତ । ସୁଖକର ହେବ ଏ ଦୁର୍ଲ୍ଲଭ ଜୀବିତ ।।

ଗଦ୍ୟ – ଶ୍ରୀଜୟଦେବ କବିଙ୍କ ଭଣିତ ଏହି ଗୀତ ଜନମାନସକୁ ସୁଖ ପ୍ରଦାନ କରୁ । କେଶବଙ୍କ ନାମାବଳୀ ବୈଷ୍ଣବଜନ-ସମୁଦାୟକୁ ଶ୍ରୀକୃଷ୍ଣଙ୍କ ପଦସରୋଜ ପ୍ରାପ୍ତିରେ ତାହାଙ୍କ ସମୀପବର୍ତ୍ତୀ କରାଉ ।

ସା ରୋମାଞ୍ଚତି ଶୀତ୍‌କରୋତି ବିଳପତ୍ୟୁତ୍‌କମ୍ପତେ ତାମ୍ୟତି,
ଧ୍ୟାୟତ୍ୟୁଦ୍‌ଭ୍ରମତି ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ।
ଏତାବତ୍ୟତନୁଜ୍ୱରେ ବରତନୁର୍ଜୀବେନ୍ନ କିଂ ତେ ରସାତ୍,
ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋଽନ୍ୟଥା ହସ୍ତକଃ । ୩ ।

ପଦ୍ୟ– ହେ ମାଧବ ! ଶୁଣ ସଖୀ ଦଶା ମୋହରି ।
ତୁମ ବିରହେ କମ୍ପଇ ଗୋପ ନାଗରୀ ।।
କେତେବେଳେ ରୋମାଞ୍ଚ ହୁଅଇ ଶରୀରେ । ହା କୃଷ୍ଣ ବୋଲି ବା କେବେ ଲୋଟେ ରସାରେ ।।
ପୁଣି ଉଠି ଚଉଦିଗେ ଚକିତେ ଚାହିଁ । ଖୋଜିଲା ପ୍ରାୟ ଦେଖଇ ମୋ’ ପ୍ରାଣସହୀ ।।
ପ୍ରଳାପ କରଇ କେବେ ଆକୁଳଭରେ । କେବେ ବା ବ୍ୟାକୁଳେ ତୁମ ନାମ ସୁମରେ ।।
ଦେବବୈଦ୍ୟ ହୋଇ ତୁମ୍ଭେ ରଖ ତା’ ପ୍ରାଣ । ନୋହିଲେ ହାରିବ ଜୀବ ରାମାରତନ ।।

ଗଦ୍ୟ – ହେ ମାଧବ, ମୋ’ ସଖୀ ରାଧିକା ତୁମ ବିରହରେ ଅଭିଳାଷ ପ୍ରକାଶ କରି ଶରୀରକୁ ରୋମାଞ୍ଚିତ କରୁଛି । ସେ ଚିନ୍ତାଜ୍ୱରରେ ପୀଡ଼ିତା ହୋଇ ମୁଖରୁ ସିତ୍‌କାର ବଚନ ବାହାରକରୁଛି । ସେ ତୁମ ଗୁଣ ସୁମରି ସର୍ବଦା ବିଳାପ କରୁଛି । ତୁମ ବିରହ-ତାପ ସହିନପାରି କମ୍ପୁଛି । ତୁମକୁ ପାଇନପାରିବାରୁ ଗ୍ଲାନି ଅନୁଭବକରୁଛି । ତୁମରି ଧ୍ୟାନରେ ନିବିଷ୍ଟମନା ହୋଇ ସର୍ବଦା ଧ୍ୟାନମଗ୍ନା ହୋଇଛି ଏବଂ ତୁମ ବିରହରେ ଉଦ୍‌ଭ୍ରାନ୍ତ ହୋଇ ଭ୍ରମଣକରୁଛି ।

ହେ କେଶବ, ରାଧିକା ଆଖିକୁ ବାରମ୍ବାର ଖୋଲି ଓ ମୁଦ୍ରିତ କରି ତୁମର କମନୀୟ ରୂପକୁ ଦେଖିଲାପରି ଭାବ ପ୍ରକାଶ କରୁଛି । ସେ ଆହୁରି ମଧ୍ୟ ବିରହ-ତାପ ସହି ନପାରି ଭୂମିରେ କେତେବେଳେ ଗଡୁଛି ଏବଂ ପୁଣି କେତେବେଳେ ଉଠିପଡ଼ି ତୁମକୁ ଖୋଜିଲା ପରି ହେଉଛି । ଏ ପ୍ରକାର ବିରହ-ତାପରେ ସଢ଼ି ଏହି ବୃନ୍ଦାବନରେ ତା’ର କମନୀୟ ଦେହ ଜୀବିତ ରହିଲା ପରି ମନେହେଉନାହିଁ । ଏହି କାମଜ୍ୱରର ଉପଶମକାରୀ ତୁମେ ଯଦି ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାର ସଦୃଶ ହୋଇ ଆଲିଙ୍ଗନ ଓ ଚୁମ୍ବନାଦି ଦାନରେ ତାକୁ ରସସିକ୍ତ କରିବ, ତା’ହେଲେ ହୁଏତ ସେ ବଞ୍ଚିଯାଇ ପାରେ । ଅନ୍ୟଥା ସେ ଜୀବନ ହରାଇଦେବ ବୋଲି ନିଶ୍ଚିତ କରି ଜାଣ ।

ସ୍ମରାତୁରାଂ ଦୈବତବୈଦ୍ୟହୃଦ୍ୟ-ତ୍ୱଦଙ୍ଗସଙ୍ଗାମୃତମାତ୍ରସାଧ୍ୟାମ୍ ।
ବିମୁକ୍ତବାଧାଂ କୁରୁଷେ ନ ରାଧା-ମୁପେନ୍ଦ୍ରବଜ୍ରାଦପି ଦାରୁଣୋଽସି । ୪ ।

ପଦ୍ୟ—ଏ ତୋର ହୃଦୟ ହରି କଠୋର ଅତି ।
ବଜ୍ରହୁଁ କଠିନ ତୋର ଦାରୁଣ ମତି ॥
କାମାତୁରା ବ୍ୟାଧି ପୀଡ଼ା ପାଉଛି ରାଧା । ତୋର ଅଙ୍ଗସଙ୍ଗ ପାଇ ହରିବ ବାଧା ॥
ଅସାଧ ବ୍ୟାଧି ଅଶ୍ୱିନୀ କୁମାର ପରି । ତୁମ୍ଭ ଅଙ୍ଗାମୃତ ଦେଇ ରଖ ମୁରାରି ॥

ଗଦ୍ୟ— ଅଶ୍ୱିନୀକୁମାରଙ୍କ ସଦୃଶ ଅତ୍ୟନ୍ତ ସୁନ୍ଦର ହେ ଉପେନ୍ଦ୍ର ଶ୍ରୀକୃଷ୍ଣ, ମଦନବ୍ୟାଧିରେ ଅତ୍ୟନ୍ତ ରୁଗ୍ଣା ହୋଇଛି ଯେଉଁ ଶ୍ରୀରାଧା ତାହାର ରୋଗନିବାରଣ ପାଇଁ ତୁମେ ତୁମର ଅଙ୍ଗସଙ୍ଗ ରୂପକ ଅମୃତ ପ୍ରଦାନ କରି, ତାହାକୁ ରୋଗମୁକ୍ତ କରିବ ନାହିଁ କି ? ତା'ର ଯେଉଁ ବ୍ୟାଧି ଜାତହୋଇଛି, ତା'ର ଏକମାତ୍ର ଔଷଧ ହେଉଛି ତୁମର ଅଙ୍ଗସଙ୍ଗ । ତା'ରି ଫଳରେ ରାଧାର କାମବ୍ୟାଧି ଦୂରହୋଇଯିବ । ତୁମେ ଯଦି ଏତିକି ଉପାୟ ନ କରିବ, ତେବେ ବଜ୍ରଠାରୁ ତୁମ ହୃଦୟ ଅଧିକ କଠିନ ବୋଲି ଜଣାଯିବ ।

**କନ୍ଦର୍ପଜ୍ୱରସଂଜ୍ୱରାତୁରତନୋରାଶ୍ଚର୍ଯ୍ୟମସ୍ୟାଶ୍ଚିରଂ**
**ଚେତଶ୍ଚନ୍ଦନଚନ୍ଦ୍ରମଃ କମଳିନୀଚିନ୍ତାସୁ ସଂତାମ୍ୟତି ।**
**କିନ୍ତୁ କ୍ଳାନ୍ତିବଶେନ ଶୀତଳତରଂ ତ୍ୱାମେକମେବ ପ୍ରିୟଂ**
**ଧ୍ୟାୟନ୍ତୀ ରହସି ସ୍ଥିତା କଥମପି କ୍ଷୀଣା କ୍ଷଣଂ ପ୍ରାଣିତି । ୫ ।**

ପଦ୍ୟ — କନ୍ଦର୍ପଜ୍ୱରେ ଆକୁଳ ଅତି ଶରୀର । ଆଶ୍ଚର୍ଯ୍ୟ ହେଉଛି ଚିତ୍ତ ନ ରହେ ତା'ର ॥
ଚନ୍ଦ୍ର ଚନ୍ଦନ କମଳ ଚିନ୍ତିଲେ ମନ । ବିଭ୍ରମ ହୁଅଇ ସଖୀ ହରାଇ ଜ୍ଞାନ ॥
ତବ କ୍ରୀଡ଼ାରସେ ଧ୍ୟାନ କରଇ ବସି । ଦୁର୍ବଳ ହୋଇଛି ଅତି କୁଟିଳକେଶୀ ॥
ଅନଙ୍ଗ ଅନଳୁ ବାରେ ଉଦ୍ଧରି ଧର । ତୁହି ସେ ତାହାର ପ୍ରିୟ-ଶୀତଳତର ॥

ଗଦ୍ୟ — ହେ ମାଧବ, ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ, କାମଜ୍ୱରରେ ପୀଡ଼ିତା ରାଧିକାର ମନ ଚନ୍ଦନ, ଚନ୍ଦ୍ରମା ଓ କମଳିନୀର ଚିନ୍ତା କରିବାମାତ୍ରେ ଅଧିକ ପୀଡ଼ିତ ହେଉଛି । କିନ୍ତୁ ଅତ୍ୟନ୍ତ କ୍ଳାନ୍ତି ହେତୁରୁ ଶୀତଳତର ଅଟେ ଯେଉଁ ତୁମର ଶରୀରକୁ ସେ ସବୁବେଳେ ଚିନ୍ତାକରୁଛି । ଏକାନ୍ତରେ ରହିଥିବା ରାଧା ତୁମରି ଧ୍ୟାନରେ କୌଣସିମତେ ଜୀବନ ଧାରଣ କରି ରହିଛି । ତେଣୁ ତୁମେ ଶୀଘ୍ର ଗମନ କରି ତା'ର କ୍ଷୀଣ ଜୀବନକୁ ରକ୍ଷା କର ।

**କ୍ଷଣମପି ବିରହଃ ପୁରା ନ ସେହେ ନୟନନିମୀଳନଖିନ୍ନୟା ଯୟା ତେ ।**
**ଶ୍ୱସିତି କଥମସୌ ରସାଳଶାଖାଂ ଚିରବିହରେଣ ବିଲୋକ୍ୟ ପୁଷ୍ପିତାଗ୍ରାମ୍ । ୬ ।**

ପଦ୍ୟ— ପୂର୍ବେ କ୍ଷଣକେ ତୋହର ବିରହେ ସଖୀ । ସହିନପାରିଣ ଅତି ହୁଅଇ ଦୁଃଖୀ ॥
ନୟନ ପିଛାଡ଼ିବାର ବିଚ୍ଛେଦ ପାଇ । ମନସିଜ ତାପେ କ୍ଷୀଣ ହୁଅଇ ଦେହୀ ॥
ଏବେ ବହୁଛି ମନ୍ଦ-ମଳୟ-ପବନ । ଚୂତଡାଳ ମୁକୁଳିତ ଅତି ଗହନ ॥
ଏହାକୁ ଦେଖିଲେ କି ସେ ଧରିବ ଦେହୀ । ଚିରକାଳୁଁ ତୋହରେ ହୋଇ ବିରହୀ ॥

× × × ×

ଦୀନବନ୍ଧୁ ଦୟାସିନ୍ଧୁ ପଙ୍କଜପଦ । ଧରଣୀଧରର ଶିରେ ଖଣ୍ଡେ ବିଷାଦ ।।

ଗଦ୍ୟ – ହେ କେଶବ, ପୂର୍ବେ ତୁମ ସହିତ ସଂଯୋଗ ଅବସ୍ଥାରେ ଯେଉଁ ରାଧିକା ତୁମ ବିରହକୁ କ୍ଷଣମାତ୍ର ସହ୍ୟ କରି ରହିପାରୁନଥିଲା, ସେହି ରାଧିକା ଚକ୍ଷୁ ମୁଦ୍ରିତ କରି ଏହି ଦୀର୍ଘବିରହରେ ମଧ କୌଣସିମତେ ବଞ୍ଚିରହି ନିଃଶ୍ୱାସ ନେଉଛି । ବର୍ତ୍ତମାନ ବସନ୍ତ ସମୟ, କାମ ଉଦ୍ଦୀପନକାରୀ ଆମ୍ରଗଛରେ ବଉଳ ଧରିଛି, ଯାହାକୁ ଦେଖିଲେ ବିରହିଣୀର ପ୍ରାଣବାୟୁ ଉଡ଼ିଯିବା ଅସମ୍ଭବ ନୁହେଁ; ତଥାପି ସେ ବଞ୍ଚି ରହିଛି; ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ !

ଇତିଶ୍ରୀ ଉତ୍କଳୀୟ କବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ
ସ୍ନିଗ୍ଧମାଧବୋ ନାମ ଚତୁର୍ଥଃ ସର୍ଗଃ ।*

□□□

* "ବୃଷ୍ଟିବ୍ୟାକୁଳ.... କଂସଦ୍ୱିଷଃ" ଶୀର୍ଷକ ଶ୍ଳୋକଟିଏ ରସିକପ୍ରିୟା ଟୀକାରେ ଥିଲେ ମଧ ଉତ୍କଳୀୟ ସଂସ୍କରଣରେ ଏ ଶ୍ଳୋକଟି ମିଳେ ନାହିଁ ।

# ପଞ୍ଚମସର୍ଗ

**ଅହମିହ ନିବସାମି ଯାହି ରାଧାମନୁନୟ ମଦ୍‌ବଚ଼ନେନ ଚାନୟେଥାଃ ।**
**ଇତି ମଧୁରିପୁଣା ସଖୀ ନିଯୁକ୍ତା ସ୍ୱୟମିଦମେତ୍ୟ ପୁନର୍ଜଗାଦରାଧାମ୍ । ୧ ।**

**ପଦ୍ୟ—** କହନ୍ତେ ସଜନୀ ଶୁଣିଲେ ସେ କମ୍ବୁପାଣି ।
ବୋଲନ୍ତି କୋମଳ ସେ ଅମୀୟ ରସବାଣୀ ଯେ ।।
ଶୁଣ ତୁ ସଜନି ! ମୁଁ ଏ ବନେ ବସିଛଇଁ ।
ମୋହର ବଚ଼ନେ ରାଧିକାକୁ ଆଣ ଯାଇ ଗୋ ।।
ମଧୁରିପୁ ଆଜ୍ଞାରେ ଚଳିଲା ସହଚ଼ରୀ ।
ପୁନରପି ଭେଟିଲା ସେ ରାଧିକା ସୁନ୍ଦରୀ ଯେ ।।
କହଇ ସଖିର ଆଗେ ହରିକଥାମାନ ।
ଶୁଣ ତୁ ସୁନ୍ଦରି ! ଯେ ହୋଇଣ ସାବଧାନ ଗୋ ।।

ଗଦ୍ୟ— ସଖୀର ଅନୁନୟବଚ଼ନ ଶୁଣି ଶ୍ରୀକୃଷ୍ଣ କହିଲେ – ହେ ସଖି, ମୁଁ ଏହିଠାରେ ବସିଛି । ତୁ ମୋ' ଦୁଃଖ ଜଣାଇ ଶ୍ରୀରାଧାଙ୍କୁ ଏହି କୁଞ୍ଜକୁ ଘେନିଆ । ମଧୁରିପୁ ଶ୍ରୀକୃଷ୍ଣଙ୍କ ବଚ଼ନରେ ସହଚ଼ରୀ ସେଠାରୁ ଫେରି ପୁଣି ରାଧିକାଙ୍କୁ ଏପରି ଭାବରେ ଅନୁନୟ କରି କହିଲା ।

*[ଦେଶୀବରାଡ଼ି ରାଗେଣ ଗୀୟତେ (ରୂପକ ତାଳେନ ଗୀୟତେ ।) (ଗୀତ—୧)]*

**ବହତି ମଳୟସମୀରେ ମଦନମୁପନିଧାୟ ।**
**ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ ।**
**ତବ ବିରହେ, ବନମାଳୀ ସଖି ! ସୀଦତି । (କ) । ଧ୍ରୁବମ୍ ।**

**ପଦ୍ୟ –** ତୋହର ବିରହେ ବନମାଳୀ ଅତି ଦୁଃଖୀ ।
ବିଷାଦରେ ବସିଅଛି ଅଇଲି ମୁଁ ଦେଖି ଗୋ ।।
ମଦନ ସଙ୍ଗତେ ବହେ ମଳୟପବନ ।
ଫୁଟିଲେ କୁସୁମ ପୂରି ହୃଦବିଦାରଣ ଗୋ ।।

ଗଦ୍ୟ – ହେ ରାଧିକେ, ତୁମ ବିରହରେ ବନମାଳାଧାରୀ ଶ୍ରୀକୃଷ୍ଣ ଅନେକ କଷ୍ଟ ପାଉଛନ୍ତି । ସେହି କୁଞ୍ଜବନରେ କାମଉଦ୍ଦୀପନକାରୀ ମଳୟପବନ ବହୁଛି । ବିରହୀମାନଙ୍କ ହୃଦୟର ଦଳନକାରୀ ନାନା ପ୍ରକାର ଫୁଲ ଫୁଟି ତାଙ୍କ ମନକୁ ଆହୁରି ଉଚ୍ଚାଟ କରୁଛି ।

ଦହତି ଶିଶିରମୟୂଖେ ମରଣମନୁକରୋତି
ପତତି ମଦନବିଶିଖେ ବିଳପତି ବିକଳତରୋଽତି । (ଖ)

ପଦ୍ୟ – ଚନ୍ଦ୍ରମା କିରଣ ପଡ଼ି ଦହେ କାମବାଣ ।
ବିକଳେ ବିଳପି ମନେ ଇଛଇ ମରଣ ଗୋ ।।

ଗଦ୍ୟ – ହେ ସଖି, ଚନ୍ଦ୍ରକିରଣ ତାଙ୍କ ଶରୀରକୁ ଦଗ୍ଧକରୁଛି । ତା' ଫଳରେ ସେ ମରଣତୁଲ୍ୟ ଯନ୍ତ୍ରଣା ଅନୁଭବ କରୁଛନ୍ତି । ଆହୁରି ମଧ କାମଦେବର ପଞ୍ଚବାଣ ତାଙ୍କ ଉପରେ ବୃଷ୍ଟିହେଉଛି । ସେହି ଶରାଘାତରେ ଅତ୍ୟନ୍ତ ବିକଳ ହୋଇ ସେ ବିଳାପ କରୁଛନ୍ତି ।

ଧ୍ୱନତି ମଧୁପସମୂହେ ଶ୍ରବଣମପି ଦଧାତି ।
ମନସି ବଳିତବିରହେ ନିଶିନିଶି ରୁଜମୁପୟାତି । (ଗ)

ପଦ୍ୟ – ଭୃଙ୍ଗକୁଳ ଧ୍ୱନି ଶୁଣି ବୁଜଇ ଶ୍ରବଣ ।
ବିରହେ ବ୍ୟଥିତ ଅତି ନିଶି ନିଶି କ୍ଷୀଣ ଗୋ ।।

ଗଦ୍ୟ – ସେହି କୁଞ୍ଜବନରେ ପୁଷ୍ପମଧୁ ପାନକରି ଭ୍ରମରମାନେ ଗୁଣୁଗୁଣୁ ସ୍ୱରରେ ଗୁଞ୍ଜନ କରୁଛନ୍ତି । ଭ୍ରମରମାନଙ୍କ ସ୍ୱର ବିରହ ବେଦନା ବଢ଼ାଉଥିବାରୁ, ଶ୍ରୀକୃଷ୍ଣ କାନରେ ହାତଦେଇ ତାହା ଶୁଣୁନାହାନ୍ତି । କେତେ ରାତି ବିତିଗଲାଣି, ବେଳକୁ ବେଳ ବୃଦ୍ଧିପାଉଥିବା ବିରହବ୍ୟଥାରେ ସେ ବହୁକଷ୍ଟ ସହିଲେଣି ।

ବସତି ବିପିନବିତାନେ ତ୍ୟଜତି ଲଳିତଧାମ ।
ଲୁଠତି ଧରଣୀଶୟନେ ବହୁ ବିଳପତି ତବ ନାମ । (ଘ)

ପଦ୍ୟ – ବସିଛି ବିପିନେ ଛାଡ଼ି ଗୃହ ଅନୁପମ ।
ଶୋଇ ଅବନୀରେ ଶୋକେ ଧରି ତବ ନାମ ଗୋ ।।

ଗଦ୍ୟ – ହେ ରାଧିକେ, ସେ ତାଙ୍କ ମନୋହର ତଥା ସୁଖକର ବାସଗୃହ ତ୍ୟାଗକରି ଭୟଙ୍କର ବନ ମଧ୍ୟରେ ବସିରହିଛନ୍ତି । ସେ ବିରହବେଦନା ସହିନପାରି ଭୂମିରେ ବାତୁଳଙ୍କ ପରି ଗଡ଼ି 'ହେ ପ୍ରିୟେ, ହେ ପ୍ରାଣେଶ୍ୱରି, ହେ ରାଧିକେ' ଆଦି ତୁମ ନାମ ଗୁଣି ଗୁଣି ବିଳାପ କରୁଛନ୍ତି ।

ରଣତି ପିକସମୁଦାୟେ ପ୍ରତିଦିଶମନୁୟାତି ।
ହସତି ମନୁଜ ନିଚୟେ ବିରହମପଲପତି ନେତି । (ଙ)*

* ୫ମ, ୬ଷ୍ଠ ଓ ୭ମ ଗୀତାଂଶ କେବଳ ବାରାଣସୀରୁ ପ୍ରକାଶିତ ଗୀତଗୋବିନ୍ଦ ପୁସ୍ତକରୁ ମିଳେ । ଖୁବ୍ ସମ୍ଭବତଃ ଅଷ୍ଟପଦୀର ପୂରଣ ପାଇଁ ଏପରି ଶ୍ଳୋକ ତିନୋଟି କେହି କବି ରଚନା କରିଛନ୍ତି ।

ପଦ୍ୟ – କୋକିଳ କଳକୂଜନ ଶୁଣି ବନମାଳୀ । ଧାମଇଁ ଚଉଦିଗକୁ ଆଗୋ ନବବାଳି ॥
ତା' ଦେଖି ହସନ୍ତେ ଜନେ ଶୁଣି ଉପହାସ । କିମ୍ପା ଏ ହସନ୍ତି ମିଛେ ବୋଲେ ପୀତବାସ ॥

ଗଦ୍ୟ – ହେ ସଖି, କୋକିଳମାନେ ଦଳଦଳ ହୋଇ କଳକୂଜନ କରନ୍ତେ ଶ୍ରୀକୃଷ୍ଣ ଉନ୍ମତ୍ତ ଭାବରେ ଚାରିଆଡ଼କୁ ଧାଉଁଛନ୍ତି । ଏହା ଦେଖି ଲୋକମାନେ ଉପହାସ କରନ୍ତେ, ସେ 'ନା ନା ମୋର କିଛି ହୋଇ ନାହିଁ' ବୋଲି ପ୍ରଳାପ କରୁଛନ୍ତି ।

**ସ୍ଫୁରତି କଳରବରାବେ ସ୍ମରତି ଭଣିତମେବ ।**
**ତବ ରତିସୁଖବିଭବେ ବହୁ ଗଣୟତି ଗୁଣମତୀବ । (ଚ଼)**

ପଦ୍ୟ – ପକ୍ଷୀଙ୍କ କଳକୂଜନ ଶୁଣି ବନମାଳୀ । ତୋ' ମଧୁର ସ୍ୱର ବୋଲି ହେଉଛନ୍ତି ଭାଳି ॥
ତୁମ୍ଭ ରତିସୁଖ ମନେ କରିଣ ବିଚାର । ପ୍ରମୋଦେ ମଜ୍ଜି ଗାଆନ୍ତି ଜୟଗାନ ତୋର ॥

ଗଦ୍ୟ – ପକ୍ଷୀମାନଙ୍କ କଳକୂଜନ ଶୁଣି, ସେ ତୁମର ମଧୁର ସ୍ୱରକୁ ସ୍ମରଣ କରୁଛନ୍ତି । ଆଉ ମଧ ସେ ତୁମ ରତିସୁଖର ଜୟଗାନକରି ଆନନ୍ଦରେ ମଗ୍ନ ହୋଇପଡୁଛନ୍ତି ।

**ତ୍ୱଦଭିଧଶୁଭଦମାସଂ ବଦତି ନରିଶୃଣୋତି ।**
**ତମପି ଜପତି ସରସଂ ପରଯୁବତିଷୁ ନ ରତିମୁପୈତି । (ଛ)**

ପଦ୍ୟ – ବୈଶାଖ ମାସକୁ ରାଧା ବୋଲି କହି ଜନେ ।
କେହୁ ଯଦି ମାସ ନାମ ଧରଇ ବଦନେ ॥
ସ୍ନେହେ ସେ ନାମ ଶ୍ରବଣ କରେ ବେଣୁପାଣି ।
ପରଯୁବତୀ ସଂସର୍ଗ ନ କରଇ ପୁଣି ॥

ଗଦ୍ୟ – କେହି ଯେତେବେଳେ ତୋର ଶୁଭଦ ନାମ ରାଧା (ବୈଶାଖ) ନାମ ମାସ ଅର୍ଥରେ କହୁଛନ୍ତି, ଶ୍ରୀକୃଷ୍ଣ ସେହି ନାମକୁ ଅତି ପ୍ରେମରେ ଶ୍ରବଣ କରୁଛନ୍ତି । ସେ ଅନ୍ୟ କୌଣସି ଯୁବତୀଙ୍କ ସହିତ ପ୍ରେମସମ୍ପର୍କ ରକ୍ଷା କରୁନାହାନ୍ତି ।

**ଭଣତି କବିଜୟଦେବ ଇତି ବିରହବିଳସିତେନ**
**ମନସି ରଭସବିଭବେ ହରିରୁଦୟତୁ ସୁକୃତେନ । (ଜ)**

ପଦ୍ୟ– କୃଷ୍ଣର ବିରହ କଥା ଜୟଦେବ ଭଣି ।
ସକଳ ସୁକୃତ ଭବେ ଲଭେ ଶୁଣି ପ୍ରାଣୀ ଯେ ॥

ଗଦ୍ୟ – ଶ୍ରୀକୃଷ୍ଣଙ୍କ ବିରହବର୍ଣ୍ଣନରେ ସମୁତ୍ସୁକ ତଥା ଆନନ୍ଦଯୁକ୍ତ ହୋଇ ଶ୍ରୀଜୟଦେବ କବି ଯାହା ଭଣିତା କରିଛନ୍ତି, ସେହି ବାଣୀ ପୁଣ୍ୟବନ୍ତ ଭକ୍ତଜନତାର ହୃଦୟରେ ସମୁଦିତ ହେଉ ।

**ପୂର୍ବଂ ଯତ୍ର ସମଂ ତ୍ୱୟା ରତିପତେରାସାଦିତାଃ ସିଦ୍ଧୟ-**
**ସ୍ତସ୍ମିନ୍ନେବ ନିକୁଞ୍ଜମନ୍ମଥମହାତୀର୍ଥେ ପୁନର୍ମାଧବଃ ।**

ଧ୍ୟାୟଂସ୍ତ୍ୱାମନିଶଂ ଜପନ୍ନପି ତବୈବାଳାପମନ୍ତ୍ରାବଳୀ
ଭୂୟସ୍ତ୍ୱତ୍‌କୁଚକୁମ୍ଭନିର୍ଭରପରିରମ୍ଭାମୃତଂ ବାଞ୍ଛତି । ୨ ।

ପଦ୍ୟ— ପୂର୍ବରେ ତାହାର ତୋର ସମଯୋଗ ହୋଇ । ରତିପତି ଆଶାପୂର୍ଣ୍ଣ ହୋଇଲାକ ଯହିଁ ଗୋ ।।
ଏବେ ସେହି ନିକୁଞ୍ଜ ସଦନରେ ମାଧବ । ମନମଥତୀର୍ଥ କରି ଧ୍ୟାଉଅଛି ତବ ଗୋ ।।
ତୋହର କ୍ରୀଡ଼ାଚରିତ ମନ୍ତ୍ର ଜପ କରି । ବାଞ୍ଛିତ ଫଳ ତାହାର ଶୁଣସି ସୁନ୍ଦରୀ ଗୋ ।।
ଏ ତୋହର ସଘନକଠିନ କୁଚ ଦୁଇ । ହୃଦେ ଭିଡ଼ି ପରିରମ୍ଭେ ସୁଧାରସ ପାଇଁ ଗୋ ।।

ଗଦ୍ୟ – ହେ ରାଧିକେ, ପୂର୍ବେ ତୁମ ସହିତ ମିଳିତ ହୋଇ ଶ୍ରୀକୃଷ୍ଣ ଯେଉଁଠାରେ କାମ ବିଷୟକ ସିଦ୍ଧି ଲାଭ କରିଥିଲେ, ସେହି କାମଦେବର ମହାତୀର୍ଥ ସ୍ୱରୂପ ବେତସ କୁଞ୍ଜରେ ମାଧବ ବସି, ସର୍ବଦା ତୁମରି ନାମରୂପକ ମନ୍ତ୍ର ଜପ କରିବା ସଙ୍ଗେ ସଙ୍ଗେ ତୁମ କୁଚକୁମ୍ଭକୁ ନିର୍ଭର କରି ସେଥିରୁ ଆଲିଙ୍ଗନ ରୂପକ ଅମୃତ ପାନ କରିବା ପାଇଁ ଅଭିଳାଷ କରିଛନ୍ତି ।

*[ଗୁର୍ଜ୍ଜରୀ ରାଗେଣ ଗୀୟତେ (ଏକତାଳୀ ତାଳେନ ଗୀୟତେ) (ଗୀତ –୨)]*

ରତିସୁଖସାରେ ଗତମଭିସାରେ ମଦନମନୋହରବେଶମ୍ ।
ନ କୁରୁ ନିତମ୍ବିନି ! ଗମନବିଳମ୍ବନମନୁସର ତଂ ହୃଦୟେଶମ୍ ।।
ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ
ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ । (କ) । ଧ୍ରୁବମ୍ ।

ପଦ୍ୟ— ସଧୀରେ ପବନ ବହେ ଯମୁନାର ତଟେ ।
ବସିଛନ୍ତି ବନମାଳୀ ତହିଁ ତୋତେ ବାଟେ ଗୋ ।।
ଚଳ ନିତମ୍ବିନି ସଖି ! ବିଳମ୍ବ ନକର,
କାମ ମନୋହର ବେଶ ହୋଇ ଅଭିସର ଗୋ ।।
ରତିସୁଖ କ୍ରୀଡ଼ାରସ ସଂସାରରେ ସାର । ପ୍ରାଣନାଥ ସନ୍ନିଧିକୁ ବେଗେ ଅନୁସର ଗୋ ।।

ଗଦ୍ୟ – ହେ ନିତମ୍ବିନି ରାଧେ, ଯୁବା-ଯୁବତୀଙ୍କ ମିଳନର ସୁଖ ସ୍ୱରୂପ ମଦନସଦୃଶ ମନୋରମ ବେଶଧାରୀ ଶ୍ରୀକୃଷ୍ଣ ଅଭିସାର କୁଞ୍ଜରେ ଉପସ୍ଥିତ ହୋଇଛନ୍ତି । ତୁମେ ଆଉ ଯିବାରେ ବିଳମ୍ବ ନକରି ପ୍ରାଣେଶ୍ୱର ଶ୍ରୀକୃଷ୍ଣଙ୍କୁ ଅନୁସରଣକର । ତୁମ ପୃଥୁଳ ସ୍ତନମଣ୍ଡଳର ପରିସରକୁ ମର୍ଦ୍ଦନ କରିବାରେ ଯାହାଙ୍କର କରଯୁଗଳ ଅତ୍ୟନ୍ତ ଚଞ୍ଚଳ ହୋଇଉଠେ, ସେହି ବନମାଳାଧାରୀ ଶ୍ରୀକୃଷ୍ଣ ମନ୍ଦ ମନ୍ଦ ପବନ ବହୁଥିବା ଯମୁନାତୀରରେ ତୁମରି ଅପେକ୍ଷାରେ ବସିରହିଛନ୍ତି । ଆଉ ବିଳମ୍ବ ନକରି ତୁମେ ସେଠାକୁ ଅଭିସାରରେ ଚାଲ ।

ନାମସମେତଂ କୃତସଙ୍କେତଂ ବାଦୟତେ ମୃଦୁବେଣୁମ୍ ।
ବହୁମନୁତେ ନନୁ ତେ ତନୁସଙ୍ଗତପବନଚଳିତମପି ରେଣୁମ୍ । (ଖ)

ପଦ୍ୟ– ତୋର ନାମ ଧରିଣ ସେ ଦେବ ଗୋପୀନାଥ ।
ବଜାଇ ମଧୁର ବେଣୁ କରଇ ସଙ୍କେତ ଗୋ ।।
ପବନେ ଉଡ଼ିଣ ରେଣୁ ପଡ଼ିଲେ ଦେହର ।
ବହୁତ ପ୍ରକାରେ ମନେ ଘେନେ ଦାମୋଦର ଗୋ ।।
ବୋଲଇ ରାଧାର ଅଙ୍ଗ ମଳୟଜ ରେଣୁ ।
ପବନ ସଙ୍ଗତେ ଉଡ଼ି ପଡୁ ମୋର ତନୁ ଗୋ ।।

ଗଦ୍ୟ – ହେ ରାଧିକେ, ନିର୍ଦ୍ଦିଷ୍ଟ ସଙ୍କେତ କୁଞ୍ଜକୁ ଯିବାପାଇଁ ବନମାଳୀ ତୁମ ନାମ ଧରି ମଧୁରସ୍ୱରରେ ମୁରଲୀ ବଜାଉଅଛନ୍ତି । ତୁମ କୋମଳ ଅଙ୍ଗକୁ ସ୍ପର୍ଶ କରି ଯେଉଁ ମୃଦୁ ପବନ ବହୁଛି, ତା' ଫଳରେ ଉଡୁଥିବା ଧୂଳିକୁ ମଧ୍ୟ ସେ ଆଦରର ସହିତ ଅଙ୍ଗରେ ଧାରଣକରୁଛନ୍ତି ।

**ପତତି ପତତ୍ରେ ବିଚଳତି ପତ୍ରେ ଶଙ୍କିତଭବଦୁପଯାନମ୍,**
**ରଚୟତି ଶୟନଂ ସଚକିତନୟନଂ ପଶ୍ୟତି ତବ ପନ୍ଥାନମ୍ । (ଗ)**

ପଦ୍ୟ – ବୃକ୍ଷରେ ପକ୍ଷୀ ବସନ୍ତେ ପତ୍ରେ ପତ୍ର ବାଜି ।
ଶଙ୍କିତ ହୁଅଇ ସେ ଆସନ ପରିତେଜି ଗୋ ।।
ତୋହର ଅଇଲା ପ୍ରାୟେ ମଣଇଁ ମୁରାରି ।
ରଚନା କରଇ ଶଯ୍ୟା ପଲ୍ଲବ ବିସ୍ତାରି ଗୋ ।।
ଚକିତ ନୟନ ହୋଇ ପୁଣ ପୁଣ ହରି ।
ଚାହିଁଇ ତବ ଆଗମ ପଥ ଅନୁସରି ଗୋ ।।

ଗଦ୍ୟ– ହେ ରାଧିକେ, ପକ୍ଷୀମାନେ ବୃକ୍ଷଡାଳରୁ ଉଡ଼ିବା ବେଳେ ଓ ଶୁଷ୍କପତ୍ର ଉଡ଼ିବାରେ ଯେଉଁ ଶବ୍ଦ ହୁଏ, ତାହା ଶୁଣି ଶ୍ରୀକୃଷ୍ଣ ତୁମ ଆଗମନ ବୋଲି ମନେକରି ନିଜେ ସତର୍କ ହୋଇଯାଇ ତୁମ ଆସିବା ବାଟକୁ ଚାହିଁ ଚାହିଁ ଶଯ୍ୟା ପ୍ରସ୍ତୁତ କରୁଛନ୍ତି । ଏଥିରୁ ତୁମେ ତାଙ୍କ ମନର ବ୍ୟାକୁଳତା ଲକ୍ଷ୍ୟକରୁଥିବ । ତେଣୁ ତୁମେ ଶୀଘ୍ର ତାଙ୍କ ନିକଟକୁ ଅଭିସାର କର ।

**ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଳମ୍ ।**
**ଚଳ ସଖି ! କୁଞ୍ଜଂ ସତିମିରପୁଞ୍ଜଂ ଶୀଳୟ ନୀଳନିଚୋଳମ୍ । (ଘ)**

ପଦ୍ୟ – ଶୁଣ ତୁ ପ୍ରାଣର ସଖି ! ବଚନ ମୋହର ।
ରୁଣିତ ଚଞ୍ଚଳ ଏ ନୂପୁର ଦୂର କର ଗୋ ।।
ରତିକେଳି କାଳେ ଏହୁ ରିପୁ ପ୍ରାଣମଣି !
ଗହନ ତିମିର କୁଞ୍ଜେ ଚଳସି ମିତଣି ଗୋ ।।

ସୁନୀଳ ବସନେ ତନୁ ପରିବୃତ କର ।
ସ୍ୱଭାବେ ସୁବେଶ ହୋଇ ପଥ ଅନୁସର ଗୋ ।।

ଗଦ୍ୟ – ହେ ସଖି, ରତିକେଳି ସମୟରେ, ଝୁମୁଝୁମୁ ହୋଇ ବାଜିଉଠୁଥିବା ଏବଂ ଚଳଚଞ୍ଚଳ ଏହି ଝୁଣ୍ଟିଆକୁ ପାଦରୁ ଖୋଲିଦିଅ, କାରଣ ଏହା ରତିକେଳି ସମୟରେ ବାଧା ସୃଷ୍ଟିକରିବ । ନିଜ ଅଙ୍ଗରେ ଶ୍ୟାମଳ ବସ୍ତ୍ର ପରିଧାନକରି ଅନ୍ଧକାରରେ ଆଚ୍ଛନ୍ନ ସେହି ଶ୍ରୀକୃଷ୍ଣଙ୍କ କୁଞ୍ଜକୁ ଚାଲ । ଏହା ଫଳରେ ତୁମର ଅଭିସାର କେହି ଜାଣିପାରିବେନାହିଁ । ନୀଳ ଶାଢ଼ୀ ପରିଧାନ କରି ତୁମେ ଚୁପ୍‌ଚୁପ୍ ଯାଇ ନିବିଡ଼ ଅନ୍ଧକାରମୟ କୁଞ୍ଜରେ ହଠାତ୍ ପ୍ରବେଶକଲେ, ଶ୍ରୀକୃଷ୍ଣ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯିବେ ।

**ଉରସି ମୁରାରେରୁପହିତହାରେ ଘନ ଇବ ତରଳବଳାକେ ।**
**ତଡ଼ିଦିବ ପୀତେ ରତି ବିପରୀତେ ରାଜସି ସୁକୃତବିପାକେ । (୬)**

ପଦ୍ୟ –

ବିପରୀତ ରତି କାଳେ ମୁକୁତାର ହାର । ଅତି ସୁରଚିତ ମଧୁରିପୁ ହୃଦୟର ଗୋ ।।
ଯେସନେ ଶ୍ୟାମଳ ମେଘେ ବକପନ୍ତି ଶୋହେ । ତବ ତନୁ ତଥିକି ତଡ଼ିତଲତା ପ୍ରାୟେ ଗୋ ।।
ଅନେକ କାଳରୁ ପୁଣ୍ୟ ଲଭିଛୁ ସୁନ୍ଦରି ! ଚଳ ଏବେ ମୋହର ବଚନ ହେତୁ କରି ଗୋ ।।

ଗଦ୍ୟ – ଆଗୋ ଚମ୍ପାଗୋରି ! ତୁ ତୋର ପୁଣ୍ୟବଳରୁ ଏପରି ସୁଯୋଗ ଲାଭକରିଛୁ । ଶ୍ରୀକୃଷ୍ଣଙ୍କ ସହିତ ବିପରୀତରତି କାଳରେ ତୋର ଏହି ମୁକ୍ତାହାର ନୂଆମେଘସଦୃଶ ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳରେ ଚଞ୍ଚଳ ବକମାଳିକା ପରି ଶୋଭାପାଇବ । ତୁ ନିଜେ ଅତ୍ୟନ୍ତ ଗୌରବର୍ଣ୍ଣା ହୋଇଥିବାରୁ, ସେତେବେଳେ ମେଘମାଳାରେ ପୀତବର୍ଣ୍ଣ ବିଜୁଳି ପରି ଆଭା ପ୍ରକାଶ କରି ତାଙ୍କ ସହିତ କେଳିରସରେ ମଜ୍ଜିଯିବୁ ।

**ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।**
**କିଶଳୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନମ୍ । (୭)**

ପଦ୍ୟ – ନବୀନ ପଲ୍ଲବ-ଶଯ୍ୟା ସୁବେଶ କରିଣ ।
ତୋର ଆଶେ ବସିଛନ୍ତି ରାଜୀବଲୋଚନ ଗୋ ।।
ତହିଁ ଯାଇ ପ୍ରବେଶ ହୋଇବୁ ଯେତେବେଳେ ।
କୃଷ୍ଣଙ୍କୁ ଦେଖିଣ ତୁ ମଜ୍ଜିବୁ କାମଭୋଳେ ଗୋ ।।
ଏ ତୋହର ରସନା-ବସନ ଦୂର କରି ।
ଘଟଣ ଘନଜଘନ ସମର୍ପିବୁ ହରି ଗୋ ।।
ତାହା ଦେଖି ହରଷ ହୋଇବ କୃଷ୍ଣ ମନ ।
ନିଧି କି ପ୍ରାପତ ଯେହ୍ନେ ଦରିଦ୍ର ସଦନ ଗୋ ।।

ଗଦ୍ୟ – ହେ ରାଧିକେ, କୋମଳ ପତ୍ରଶଯ୍ୟାରେ ଶୋଇଥିବା ବିରହୀ ରସରାଜ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ତୁମ ଅଙ୍ଗରୁ ପିନ୍ଧିଲା ବସନ ଓ ଅଣ୍ଟାରୁ କ୍ଷୁଦ୍ର ଘଣ୍ଟିକା ଯୁକ୍ତ ଚନ୍ଦ୍ରହାର ଆପେ ଆପେ ଖସିପଡ଼ିବ । ତା'ଫଳରେ କେଳିରସରେ ଆନନ୍ଦ ପ୍ରଦାନକାରୀ ତଥା ଅମୂଲ୍ୟ ନିଧି ସ୍ୱରୂପ ତୁମ ଉଲଗ୍ନ ଜଘନଦେଶରେ ତୁମେ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି, ତାଙ୍କ ମନରେ ଅପୂର୍ବ ହର୍ଷ ସୃଷ୍ଟି କର ।

**ହରିରଭିମାନୀ ରଜନିରିଦାନୀମିୟମପି ଯାତି ବିରାମମ୍ ।**
**କୁରୁ ମମ ବଚ଼ନଂ ସତ୍ୱରରଚ଼ନଂ ପୂରୟ ମଧୁରିପୁକାମମ୍ । (ଛ)**

ପଦ୍ୟ – ହରି ଅଭିମାନୀ ବୋଲି ଜାଣୁ ତ ସୁନ୍ଦରି !
ଏଣୁକରି ତୋତେ ସଖି ! କହଇ ତିଆରି ଗୋ ।।
ହରିବେ ତୋହର ମନ ଜଗତ-ଜୀବନ ।
ବେଳୁବେଳ ବିଭାବରୀ ହେଉଅଛି କ୍ଷୀଣ ଗୋ ।।
ମୋହର ବଚ଼ନ ଘେନି ବେଗେ ସଜ ହୁଅ ।
ମଧୁରିପୁ ମନୋରଥ ବାଞ୍ଛା ତୁ ପୂରାଅ ଗୋ ।।

ଗଦ୍ୟ – ହେ ସଖି, ଶ୍ରୀକୃଷ୍ଣ ଅତ୍ୟନ୍ତ ଅଭିମାନୀ ଅଟନ୍ତି । ଆଉ ବିଳମ୍ବ କରିବା ଉଚିତ ହେବନାହିଁ । ଦେଖ, ବର୍ତ୍ତମାନ ରାତି ପାହିଯିବାକୁ ବସିଲାଣି । ତେଣୁ ତୁ ଶୀଘ୍ର ମୋ' କଥା ମାନି, ମଧୁରିପୁ ଶ୍ରୀକୃଷ୍ଣଙ୍କର ତୋତେ ପାଇବା ଏବଂ ତୋ' ସହିତ କେଳିରସରେ ମଜ୍ଜିବା ରୂପକ ଅଭିଳାଷକୁ ପୂରଣକର ।

**ଶ୍ରୀଜୟଦେବେ କୃତହରିସେବେ ଭଣତି ପରମରମଣୀୟମ୍ ।**
**ପ୍ରମୁଦିତହୃଦୟଂ ହରିମତିସଦୟଂ ନମତ ସୁକୃତକମନୀୟମ୍ । (ଜ)**

ପଦ୍ୟ – ଶ୍ରୀକୃଷ୍ଣ ସେବକ ଜୟଦେବ ଯାହା ଭଣି । ପ୍ରଣତଜନଙ୍କ ଦୟାକାରିଣୀ ଏ ବାଣୀ ଯେ ।।
କମନୀୟ କାନ୍ତିଧର ସୁପୁଣ୍ୟ ଦାୟକ । ହୁଅ ପ୍ରଣମିତେ ତାଙ୍କ ଚରଣସେବକ ହେ ।।

ଗଦ୍ୟ – ହେ ଭକ୍ତଜନମାନେ ଶ୍ରୀମାଧବଙ୍କ ପଦସେବକ କବିରାଜ ଜୟଦେବ ଶ୍ରୀହରିଙ୍କ ଲୀଳାବର୍ଣ୍ଣିତ ପରମ ରମଣୀୟ ଗୀତ ରଚ଼ନା କରିଛନ୍ତି । ତୁମେମାନେ ସେହି କମନୀୟ କାନ୍ତିମାନ୍, ପୁଣ୍ୟପ୍ରଦାନକାରୀ, ସଦୟହୃଦୟ ତଥା ପ୍ରମୁଦିତ ଗୋବିନ୍ଦଙ୍କୁ ପ୍ରଣାମ କର ।

**ବିକିରତି ମୁହୁଃ ଶ୍ୱାସାନାଶାଂ ପୁରୋ ମୁହୁରୀକ୍ଷତେ**
**ପ୍ରବିଶତି ମୁହୁଃ କୁଞ୍ଜଂ ଗୁଞ୍ଜନ୍ ମୁହୁର୍ବହୁ ତାମ୍ୟତି ।**
**ରଚ଼ୟତି ମୁହୁଃ ଶଯ୍ୟାଂ ପର୍ଯ୍ୟାକୁଳଂ ମୁହୁରୀକ୍ଷତେ**
**ମଦନକଦନକ୍ଳାନ୍ତଃ କାନ୍ତେ ପ୍ରିୟସ୍ତବ ବର୍ତ୍ତତେ । ୩ ।**

ପଦ୍ୟ – ସେ ତୋହର କାନ୍ତ ଅତି ଦୁଃଖେ ବର୍ତ୍ତିଅଛି ।
ନାସାଅଗ୍ରେ କେବଳ ନିଃଶ୍ୱାସ ବହୁଅଛି ଗୋ ।।
କ୍ଷଣେ ମୂର୍ଚ୍ଛା ଯାଇ କ୍ଷଣେ ହୁଅଇ ସଚେତ ।
କ୍ଷଣେ କୁଞ୍ଜଗୃହେ ପଶି ଚାହିଁଇ ତ୍ୱରିତ ଗୋ ।।
ମଦନକଦନେ ସଢ଼େ ତୋର ପ୍ରିୟତମ ।
କ୍ଷଣକେ ପଲ୍ଲବ ଶେଯ କରେ ବିରଚନ ଗୋ ।।
ଆକୁଳ ହୋଇଣ ପୁଣ ପୁଣ ଯାଇ ମୋହ ।
ମଦନ ଦହନ କରୁଅଛି ତା'ର ଦେହ ଗୋ ।।

ଗଦ୍ୟ – ହେ ମନୋହାରିଣି ! ତୋର ପ୍ରାଣପ୍ରିୟ ଶ୍ରୀକୃଷ୍ଣ ବାରମ୍ବାର ନାସାରୁ ଖରଉଷ୍ଣନିଃଶ୍ୱାସ ଛାଡୁଛନ୍ତି । ତୋ' ଆଗମନ ପଥକୁ ବାର ବାର ଚାହିଁ ଚାହିଁ କ୍ଲାନ୍ତ ହୋଇପଡ଼ିଲେଣି । ତା' ବ୍ୟତୀତ ଧ୍ୟାନରେ ତୋ' ରୂପକୁ ଚିନ୍ତାକରି ନାସାର ଅଗ୍ରଭାଗରେ ଦୃଷ୍ଟି ନିବଦ୍ଧ କରିଛନ୍ତି । ତୋ' ଆଗମନରେ ବିଳମ୍ବ ହେବାରୁ, ଅତ୍ୟନ୍ତ ଅନୁତପ୍ତ ହୋଇ ବାରମ୍ବାର କୁଞ୍ଜକୁ ପ୍ରବେଶ କରୁଛନ୍ତି ଏବଂ ଶାନ୍ତି ନପାଇ ପୁଣି ଫେରିଆସି ତୋ' ଆଗମନ ପଥ ଚଉଦିଗକୁ ଚାହିଁ ବ୍ୟାକୁଳ ହେଉଛନ୍ତି । ସେ ଆହୁରି ମଧ୍ୟ ନାନାପ୍ରକାର କୋମଳପତ୍ର ପକାଇ ମୁହୁର୍ମୁହୁଃ ଶେଯ ପ୍ରସ୍ତୁତ କରୁଛନ୍ତି । ହେ କାନ୍ତେ, କାମଶରରେ ଆକ୍ରାନ୍ତ ହୋଇ ତୋ' ପ୍ରିୟତମ ଏପରି ଭାବରେ କାମଦଶା ଭୋଗୁଛନ୍ତି ।

ତ୍ୱଦ୍‌ବାଣେଣ ସମଂ ସମଗ୍ରମଧୁନା ତିଗ୍ମାଂଶୁରସ୍ତଂଗତୋ
ଗୋବିନ୍ଦସ୍ୟ ମନୋରଥେନ ଚ ସମଂ ପ୍ରାପ୍ତଂ ତମଃ ସାନ୍ଦ୍ରତାମ୍ ।
କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା ମଦଭ୍ୟର୍ଥନା
ତନ୍ମୁଗ୍ଧେ ! ବିଫଳଂ ବିଳମ୍ବନମସୌ ରମ୍ୟୋଽଭିସାରକ୍ଷଣଃ । ୪ ।

ପଦ୍ୟ – ଦେଖସି ଦିବସନାଥ ବେଗେ ଅସ୍ତ ଗଲା ।
ଗୋବିନ୍ଦ ବେଦନା ପରି ରଜନୀ ବଢ଼ିଲା ଗୋ ।।
ଚକ୍ରବାକ ବିଚ୍ଛେଦ କାରଣ ଅତି ରାବ ।
ମୋହର ପ୍ରାର୍ଥନା ତୋତେ ହେଲା ସେହି ଭାବ ଗୋ ।।
ଶୁଣ ତୁ ସୁନ୍ଦରି ! ଏ' ତୋ' ବିଳମ୍ବ ବିଫଳ ।
ରମ୍ୟସ୍ଥାନେ ଅଭିସାର କର ଏହୁ କାଳ ଗୋ ।।

ଗଦ୍ୟ – ହେ ସଖି, ତୁମର ଦୀର୍ଘ ବିରହଜ୍ୱାଳାରୁ ନିର୍ଗତ ନିଃଶ୍ୱାସ ବାଷ୍ପରେ ବିବ୍ରତ ହୋଇ ସୂର୍ଯ୍ୟ ଅସ୍ତ ହୋଇଯାଇଛନ୍ତି । ଗୋବିନ୍ଦଙ୍କର ସାନ୍ଦ୍ର ମନୋରଥ ସଦୃଶ ରାତ୍ରିର ଅନ୍ଧକାର ମଧ୍ୟ ନିବିଡ଼ତର ହୋଇଗଲାଣି । ଚକ୍ରବାକ ଦମ୍ପତିର କରୁଣ ବିଳାପ ପରି ତୁମ

ନିକଟରେ ମୋର ପ୍ରାର୍ଥନା ମଧ ଅତ୍ୟନ୍ତ ଦୀର୍ଘତର ହୋଇସାରିଲାଣି । ହେ ମୁଗ୍‌ଧେ ! ବର୍ତ୍ତମାନ ହେଉଛି ଅଭିସାରର ପ୍ରକୃତ ସମୟ । ବିଳମ୍ବ ନକରି ଶୀଘ୍ର ବେତସ କୁଞ୍ଜକୁ ଅଭିସାରରେ ବାହାରିପଡ଼ । ଆଉ ବିଳମ୍ବ କଲେ, ତୁମ ମନୋରଥ ବିଫଳ ହୋଇପାରେ ।

ଆଶ୍ଳେଷାଦନୁ ଚୁମ୍ବନାଦନୁ ନଖୋଲ୍ଲେଖାଦନୁ ସ୍ୱାନ୍ତଜ-
ପ୍ରୋଦ୍‌ବୋଧାଦନୁସମ୍ଭ୍ରମାଦନୁରତାରମ୍ଭାଦନୁ ପ୍ରୀତୟୋଃ ।
ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସମ୍ଭାଷଣୈ ର୍ଜାନତୋ
ର୍ଦମ୍ପତ୍ୟୋରିହ କୋ ନ କୋ ନ ତମସି ବ୍ରୀଡ଼ାବିମିଶ୍ରୋ ରସଃ । ୫ ।

ପଦ୍ୟ— ବୋଲଇ ସଜନି ! ଏକଦିନେ ନିଶି ଘୋର ।
ଗୃହଁରୁ କୁଳଟା ବାମା କଲା ଅଭିସାର ଗୋ ।।
ତାହାର ବଲ୍ଲଭ ପର ରମଣୀର ଆଶେ ।
ସଙ୍କେତ ସ୍ଥାନକୁ ସେହୁ ଗମଇ ହରଷେ ଗୋ ।।
ନିବିଡ଼ ଅନ୍ଧାରେ ଭ୍ରମେ ଭେଟ ହେଉଁ ବେନି ।
ନିଜ ପତି ପତ୍ନୀ ବୋଲି ନ ପାରିଲେ ଚିହ୍ନି ଗୋ ।।
ଯାହାର ପାଇଁ ଗମନ୍ତି ତାହା ପ୍ରାୟ ମଣି ।
କରନ୍ତି ବିବିଧ କେଳିରସ ପରିମାଣି ଗୋ ।।
ଭୁଜେ ଭିଡ଼ି ଆଲିଙ୍ଗନ ବଦନେ ଚୁମ୍ବନ ।
କଠିନ କୁଚରେ ତୀକ୍ଷ୍ଣ ନଖକ୍ଷତମାନ ଗୋ ।।
ବଢ଼ିଲା ସୁରତି ସେ ଭାଷନ୍ତେ ମୃଦୁସ୍ୱରେ ।
ଜାଣି ଲାଜ ପାଇଲେକ ସୁରତି ଶେଷରେ ଗୋ ।।
ସାତ୍ତ୍ୱିକ ବିକାରେ କିଛି ନ ଜାଣିଲେ କେହି ।
ଗାଢ଼େଣ ସୁରତିରସ ଆରମ୍ଭିଲେ ତହିଁ ଗୋ ।।
ତେସନ ପ୍ରାୟେକ ଏହୁ ହୋଇଛି ରଜନୀ ।
ହରି ପାଶେ ଅଭିସାର କର ତୁ ମିତଣି ଗୋ ।।

ଗଦ୍ୟ – ହେ ରାଧିକେ, ଏ ସମ୍ବନ୍ଧରେ ଗୋଟିଏ ଘଟଣା ବର୍ଣ୍ଣନା କରୁଛି ଶୁଣ । ନିବିଡ଼ ଅନ୍ଧକାର ମଧ୍ୟରେ ଗୋଟିଏ ପୁରୁଷ ଅନ୍ୟ ସ୍ତ୍ରୀର ଅନୁସରଣରେ ଚାଲିଥିଲା ଏବଂ ସେହି ପୁରୁଷର ପତ୍ନୀ ମଧ ପରପୁରୁଷକୁ କଣ୍ଟଦେଇ ଅନ୍ଧକାର ମଧ୍ୟରେ ଅଭିସାର କରୁଥିଲା । ଦୈବାତ୍ ଭ୍ରମବଶତଃ ଦୁହେଁ ଦୁହିଙ୍କୁ ଅନ୍ଧକାର ମଧ୍ୟରେ ଚିହ୍ନିନପାରି ନିଜନିଜର ଈପ୍‌ସିତ ପ୍ରଣୟୀ ଓ ପ୍ରଣୟିନୀ ବୋଲି ଭାବି ଆଲିଙ୍ଗନ, ଚୁମ୍ବନ, ନଖକ୍ଷତ, କାମଭାବଜାତ, ସୁରତ ଆରମ୍ଭ ଓ ରତିକେଳି ସାରିବା ପରେ ଆନନ୍ଦରେ ଆଳାପ କରିବା ପରେ ଦୁହେଁ ଦୁହିଙ୍କୁ ଚିହ୍ନିପାରି ଲଜ୍ଜିତ ହୋଇଥିଲେ । ତା ' ଫଳରେ ଦୁହେଁ ପରସ୍ପରର ଦୋଷ ଅବଗତ ହୋଇ

ଆନନ୍ଦରେ ଅଧୀର ହୋଇଉଠିଥିଲେ । ଏହାହିଁ ହେଉଛି ନିବିଡ଼ ଅନ୍ଧକାରର ଅବଦାନ । ତେଣୁ ଏହି ନିବିଡ଼ ଅନ୍ଧକାର ମଧ୍ୟରେ ଆଉ ବିଳମ୍ବ ନକରି ଚାଲ, ଅନ୍ୟଥା ପୂର୍ବୋକ୍ତ ପତିପତ୍ନୀଙ୍କ ପରି ହୁଏତ ଶ୍ରୀକୃଷ୍ଣ ତୋତେ ବୋଲି ମନେକରି ଆଉ କା' ସହିତ ମିଳିତ ହୋଇପାରନ୍ତି ।

**ସଭୟଚକିତଂ ବିନ୍ୟସ୍ୟନ୍ତୀ ଦୃଶଂ ତିମିରେ ପଥି,**
**ପ୍ରତିତରୁ ମୁହୁଃ ସ୍ଥିତ୍ୱା ମନ୍ଦଂ ପଦାନି ବିତନ୍ୱତୀମ୍ ।**
**କଥମପି ରହଃ ପ୍ରାପ୍ତାମଙ୍ଗୈରନଙ୍ଗତରଙ୍ଗିଭିଃ**
**ସୁମୁଖି ! ସୁଭଗଃ ପଶ୍ୟନ୍ ସ ତ୍ୱାମୁପୈତୁ କୃତାର୍ଥତାମ୍ । ୬ ।**

ପଦ୍ୟ— ସଭୟ ଚକିତେ ମନ କରି ଛନଛନ ।
ଗହନ ତିମିର ପଥେ କରସି ଗମନ ଗୋ ।।
ତରୁତଳେ କ୍ଷଣେ କ୍ଷଣେ ବିଶ୍ରାମ କରିବୁ ।
ସଧୀରେ ସଧୀରେ କୁଞ୍ଜସଦନେ ମିଳିବୁ ଗୋ ।।
ଶୁଭଯୋଗେ ସୁମୁଖି ! କରସି ଅନୁକୂଳ ।
ଏ ମୋର ବଚନେ ସଖି ! ନ କରସି ହେଳ ଗୋ ।।
ଅନଙ୍ଗ ତରଙ୍ଗେ ତରଳିବ ତୋର ତନୁ ।
କୃତାର୍ଥ ହୋଇବେ ତୋତେ ଦେଖି ନନ୍ଦସୂନୁ ଗୋ ।।

× × × ×

ମଧୁକର ଯେସନେ ଧରଣୀଧର ମତି ।
ହରିର ଶରଣ ବିନୁ ନାହିଁ ଅନ୍ୟଗତି ଯେ ।।

ଗଦ୍ୟ — ହେ ସଖି, ତୁମେ ଅଭିସାରରେ ଯିବାବେଳେ କାଳେ କିଏ ତୁମକୁ ଦେଖିଦେଉଛି କି ଭାବି, ଭୟବିହ୍ୱଳ ଚିତ୍ତରେ ଚାରିଆଡ଼କୁ ଚାହିଁ ଚାହିଁ ଧୀରେ ଧୀରେ ଛପି ଛପି ଯାଉଥିବ । ପ୍ରତି ବୃକ୍ଷମୂଳରେ କାଳେ ଶ୍ରୀକୃଷ୍ଣ ଲୁଚିଛନ୍ତି କି ବୋଲି ଭାବି କ୍ଷଣକାଳ ରହି ରହି ଧୀରମନ୍ଥର ଗତିରେ ଚାଲିଥିବ । ତୁମ ହୃଦୟରେ କାନ୍ତ ସହିତ ମିଳନ କାମନା ଜନିତ କାମତରଙ୍ଗ ଖେଳିଯାଇଥିବ ଏବଂ ହଠାତ୍ ତୁମେ ଯାଇ ପ୍ରାଣପ୍ରିୟଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେବ ବୋଲି ଭାବି ମନେମନେ ଉଲ୍ଲସିତା ହୋଇଉଠିଥିବ । ରେ ସୁମୁଖି ! ଏପରି ଅବସ୍ଥାରେ ତୁମକୁ ତୁମର ପ୍ରାଣପ୍ରିୟ ଦେଖିଲେ କୃତକୃତ୍ୟ ହୋଇଯିବେ ।

**ଇତିଶ୍ରୀ ଉତ୍କଳୀୟ ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ସାକାଂକ୍ଷ-ପୁଣ୍ଡରୀକାକ୍ଷୋ ନାମ ପଞ୍ଚମଃ ସର୍ଗଃ ।**

□□□

# ଷଷ୍ଠସର୍ଗ

ଅଥ ତାଂ ଗନ୍ତୁମଶକ୍ତାଂ ଚିରମନୁରକ୍ତାଂ ଲତାଗୃହେ ଦୃଷ୍ଟ୍ୱା
ତଚ୍ଚରିତଂ ଗୋବିନ୍ଦେ ମନସିଜମନ୍ଦେ ସଖୀ ପ୍ରାହ । ୧ ।

ପଦ୍ୟ – ରାଧିକାକୁ ରଖାଇ ସେ ଚଳିଲା ତରୁଣୀ ।
ମିଳିଲା ଗୋବିନ୍ଦ ପାଶେ ସଖୀ ଦୁଃଖ ଘେନି ।।
ଶୁଣ ତୁ ମାଧବ ! ରାଧା ଅତ୍ୟନ୍ତ ବିରହୀ ।
ତୋର ପାଶେ ଆସିବାକୁ ଅସକତ ଦେହୀ ।।
ଚିରକାଳୁ ତୋର ଅନୁରାଗିଣୀ ତରୁଣୀ ।
ତୋହର ଚରିତମାନ ଦିବାନିଶି ଗୁଣି ।।

ଗଦ୍ୟ – ଏହାପରେ ସଖୀ ସଙ୍କେତିତ ଲତାକୁଞ୍ଜରେ ବିରହବିଧୁରା ରାଧାଙ୍କୁ, ଶ୍ରୀକୃଷ୍ଣଙ୍କ ନିକଟକୁ ଅଭିସାରରେ ଗମନ କରିବା ପାଇଁ ଅସମର୍ଥ ହୋଇଥିବାର ଦେଖି, କାମପୀଡ଼ାରେ ଅବସନ୍ନ ଗୋବିନ୍ଦଙ୍କ ନିକଟରେ ତା'ର (ଶ୍ରୀରାଧାଙ୍କର) ଚରିତ ବର୍ଣ୍ଣନା କରି କହିଲା, ଅର୍ଥାତ୍ ଶ୍ରୀରାଧିକାଙ୍କ ଅସମର୍ଥତା ସମ୍ବନ୍ଧରେ ବୁଝାଇ କହିଲା ।

*[ଗୁଣ୍ଡକିରୀ ରାଗେଣ ଗୀୟତେ (ରୂପକ ତାଳେନ ଗୀୟତେ ।) (ଗୀତ—୧) ]*

ପଶ୍ୟତି ଦିଶିଦିଶି ରହସି ଭବନ୍ତମ୍
ତ୍ୱଦଧରମଧୁରମଧୂନି ପିବନ୍ତମ୍
ନାଥ ହରେ ! ସୀଦତି ରାଧା ବାସଗୃହେ । (କ) । ଧ୍ରୁବମ୍ ।

ପଦ୍ୟ – ମନ୍ଦ ମନସିଜ ତା'ର ଦହଇ ଯେ ମନ ।
ଲତାଗୃହେ ଦେଖିଲି ସୁତନୁ ଅତି କ୍ଷୀଣ ।।
ବସିଣ ଚାହିଁଇ ସଖୀ ସେ ସକଳ ଦିଶ । ତୋହର ମଧୁରାଧର ପାନେ ପ୍ରତିଆଶ ।।
ବିଶଦ କୁଞ୍ଜସଦନେ ବସିଛି ସୁନ୍ଦରୀ । ତବ ନାମ ଗୁଣ ଜପମାଳା କରେ ଧରି ।।

ଗଦ୍ୟ – ହେ ଅନାଥର ନାଥ ହରି, ରାଧା ଲତାକୁଞ୍ଜରେ ବହୁ କଷ୍ଟ ପାଉଛି । ସେ ଏକାନ୍ତରେ ତୁମକୁ ପାଇବା ପାଇଁ ନିତାନ୍ତ ବ୍ୟସ୍ତ ହୋଇ ଦଶଦିଗକୁ ବାରମ୍ବାର ଚାହୁଁଛି । କଳ୍ପନାରେ ତୁମରି ଅଧର ମଧୁକୁ ପାନକରି ବିଭୋର ହୋଇଯାଉଛି । ଏପରି ଅବସ୍ଥାରେ ତାହାକୁ ରକ୍ଷାକରିବା ତୁମର ଏକାନ୍ତ କର୍ତ୍ତବ୍ୟ ।

ତ୍ୱଦଭିସରଣରଭସେନ ବଳନ୍ତୀ
ପତତି ପଦାନି କିୟନ୍ତି ଚଳନ୍ତୀ ।(ଖ)

ପଦ୍ୟ– ତୁମ୍ଭ ପାଶେ ଆସିବାକୁ ବହୁ ଇଚ୍ଛା କରି । ଅତିକଷ୍ଟେ ଉଠଇ ରଭସେ ସହଚରୀ ॥
ଧୀର ଧୀର ହୋଇ ତବ ଆଶେ ଅନୁସରେ । ଚରଣେ ଚଳିନପାରି ପଡ଼ଇ ଭୂମିରେ ॥

ଗଦ୍ୟ – ହେ ଶ୍ରୀକୃଷ୍ଣ, ମୋ' ସଖୀ ତୁମ ନିକଟକୁ ଆସିବା ଲାଗି ବ୍ୟଗ୍ର ହୋଇ ଆସିବାକୁ ଉଦ୍ୟମ କରି ଦୁଇ ଚାରି ପହଣ୍ଡ ଚାଲିବା ପରେ ନିତାନ୍ତ ଦୁର୍ବଳ ହେତୁରୁ ପୁଣି ତଳେ ପଡ଼ିଯାଉଛି । ଏପରି ଅବସ୍ଥାରେ ସେ ତୁମ ପାଖକୁ ଆସିବ କିପରି ?

**ବିହିତବିଶଦବିସକିଶଳୟବଳୟା ।**
**ଜୀବତି ପରମିହ ତବ ରତିକଳୟା । (ଗ)**

ପଦ୍ୟ – ହେ ମାଧବ ! ରାଧା ତୁମ୍ଭ ବିରହ ତାପରେ ।
ବଳୟ କରିଛି ନବ ମୃଣାଳ ପତ୍ରରେ ॥
ତୁମ୍ଭ କେଳି ବିଳାସକୁ ମନରେ ସୁମରି । ବଞ୍ଚିରହିଛି ତୁମ୍ଭର ପଥ ଅନୁସରି ॥

ଗଦ୍ୟ – ହେ ମାଧବ, ସେ ତୁମ ବିରହତାପରେ ସଢ଼ିଯାଇ ନିର୍ମଳ ନୂତନ ମୃଣାଳ ପତ୍ରକୁ ବଳୟରୂପେ କରଯୁଗଳରେ ଧାରଣକରିଛି ଏବଂ ତୁମରି ରତିକେଳି-ବିଳାସକୁ ସ୍ମରଣ କରି କୌଣସିମତେ ବଞ୍ଚିରହିଛି ।

**ମୁହୁରବଲୋକିତମଣ୍ଡନଲୀଳା**
**ମଧୁରିପୁରହମିତି ଭାବନଶୀଳା । (ଘ)**

ପଦ୍ୟ – ତୁମ୍ଭ ମୁକୁଟ-କୁଣ୍ଡଳ ଆଦି ଅଳଙ୍କାରେ । ପିନ୍ଧଇ ରାଧା-ସୁନ୍ଦରୀ ବିରହ କାତରେ ॥
ଭୂଷଣ ହୋଇ ଅଙ୍ଗକୁ ଚାହିଁଣ ଅଙ୍ଗନା । ମଧୁରିପୁ ବୋଲି ମନେ କରଇ ଭାବନା ॥

ଗଦ୍ୟ – ହେ ମାଧବ ! ମୋ' ସଖୀ ଗୋପନରେ ତୁମରି ମୁକୁଟ-କୁଣ୍ଡଳ ଆଦି ଭୂଷଣରେ ଭୂଷିତା ହୋଇ, ନିଜକୁ ମଧୁରିପୁ ଅର୍ଥାତ୍ ତୁମେ ବୋଲି ଭାବି ଆନନ୍ଦିତା ହେଉଛି ।

**ତ୍ୱରିତମୁପୈତି ନ କଥମଭିସାରମ୍**
**ହରିରିତି ବଦତି ସଖୀମନୁବାରମ୍ । (ଙ)**

ପଦ୍ୟ – ପଚାରଇ ସଖୀକି ସଙ୍କେତସ୍ଥାନେ ମୋର । ନଇଲେ ତ୍ୱରିତେ କିମ୍ପା ସେ ନବନାଗର ॥
ଏତେ କହି ଅସ୍ଥିର ହୋଇଣ ସେ ସୁନ୍ଦରୀ । ବାର ବାର ବୋଲୁଅଛି ରଖ ହେ ମୁରାରି ॥

ଗଦ୍ୟ – ହେ ମାଧବ, ସେ ବ୍ୟଗ୍ର ହୋଇ ବାରମ୍ବାର ସଖୀକୁ ପଚାରୁଛି – ଏତେବେଳ ଯାଏଁ କାହିଁକି ଶ୍ରୀହରି ମୋ' କୁଞ୍ଜସଦନକୁ ଅଭିସାରରେ ଆସିଲେ ନାହିଁ ।

**ଶ୍ଳିଷ୍ୟତି ଚୁମ୍ବତି ଜଳଧରକଳ୍ପମ୍**
**ହରିରୁପଗତ ଇତି ତିମିରମନଳ୍ପମ୍ । (ଚ)**

**ପଦ୍ୟ**—ଗହନତିମିର କୁଞ୍ଜଭୁବନକୁ ଦେଖି । ଜଳଧର ପ୍ରାୟେ ତବ ରୂପ ଉପଲକ୍ଷ୍ୟ ॥
ତୋର ରୂପ ବୋଲି ସଖୀ କରଇଟି କୋଳ । ଶୂନ୍ୟକୁ ଚୁମ୍ବନ ଦେଇ ହୁଅଇ ସେ ଭୋଳ ॥

**ଗଦ୍ୟ** – ହେ ମାଧବ, ଶ୍ରୀହରି ଆସିଗଲେ ବୋଲି ମନେକରି, ସେ ନବଜଳଧର ସଦୃଶ ସାନ୍ଦ୍ର ତଥା ନିବିଡ଼ ଅନ୍ଧକାରକୁ ଭ୍ରମବଶତଃ ଆଲିଙ୍ଗନ କରି ଚୁମ୍ବନ ଦେଉଛି ।

**ଭବତି ବିଳମ୍ବିନି ବିଗଳିତଲଜ୍ଜା**
**ବିଳପତି ରୋଦିତି ବାସକସଜ୍ଜା । (ଛ)**

**ପଦ୍ୟ**– ତବ ପ୍ରେମରସେ ଭୋଳ ହୋଇଛି ତରୁଣୀ । କୁଞ୍ଜଗୃହେ ଶେଯପାତି ଚାହେଁ ପୁଣି ପୁଣି ॥
ତୋର ଗମନେ ବିଳମ୍ବ ଦେଖି ଚାରୁମୁଖୀ । ଲଜ୍ଜା ଛାଡ଼ି ବିଳପି ରୋଦନ କରେ ସଖୀ ॥

**ଗଦ୍ୟ** – ହେ କେଶବ, ତୁମ ସହିତ ମିଳିତ ହେବା ପାଇଁ ସେ ବ୍ୟଗ୍ର ହୋଇପଡ଼ିଛି । ତୁମ ଗମନର ବିଳମ୍ବ ଦେଖି ସେ ଲୋକଲାଜ ଛାଡ଼ି, ତୁମରି ଆଗମନ ଉଦ୍ଦେଶ୍ୟରେ କୁଞ୍ଜମଧ୍ୟରେ ଶେଯ ସଜାଡ଼ିଥିବା ରାଧା ତୁମ ଗୁଣ ଗୁଣି ରୋଦନ କରୁଛି ।

**ଶ୍ରୀଜୟଦେବକବେରିଦମୁଦିତମ୍**
**ରସିକଜନଂ ତନୁତାମତିମୁଦିତମ୍ । (ଜ)**

**ପଦ୍ୟ** – ଶ୍ରୀଜୟଦେବ କବିଙ୍କ ରଚିତ ଏ ଗୀତ ।
ଗାନେ ରସିକଙ୍କ ମନେ ହର୍ଷ ହେଉ ଜାତ ॥

**ଗଦ୍ୟ** – ଶ୍ରୀଜୟଦେବ କବିଙ୍କ ରଚିତ ଏହି ମଧୁମୟ ଗୀତ ରସିକଜନମାନଙ୍କ ହୃଦୟରେ ଆନନ୍ଦ ଜାତ କରାଉ ।

**ବିପୁଳପୁଲକପାଳିଃ ସ୍ଫୀତସୀତ୍କାରମନ୍ତଃ**
**ଜନିତଜଡ଼ିମକାକୁବ୍ୟାକୁଳଂ ବ୍ୟାହରନ୍ତୀ ।**
**ତବ କିତବ ବିଧାୟାମନ୍ଦକନ୍ଦର୍ପଚିନ୍ତାଂ**
**ରସଜଳନିଧିମଗ୍ନା ଧ୍ୟାନଲଗ୍ନା ମୃଗାକ୍ଷୀ । ୨ ।**

**ପଦ୍ୟ** – ବିପୁଳ ପୁଲକ ଘନ ରୋମାବଳୀ ତା'ର । ଅନ୍ତର ଜଡ଼ିତ କାମ ସାତ୍ତ୍ୱିକ ବିକାର ॥
ବ୍ୟାକୁଳ ହୋଇଣ ବାଣୀ ନ ପାରଇ କହି । ମନସିଜ ଚିନ୍ତାତାପ କେସନକ ସହି ॥
ବୁଡ଼ିଲା କାମସିନ୍ଧୁରେ ଶିଶୁ ମୃଗାକ୍ଷୀ । ଶୁଣ ଶଠ ! ତବ ରୂପ ଧ୍ୟାନେ ନିରେଖି ॥

ଗଦ୍ୟ – ହେ ଶଠ ନାଗର ! ମୃଗନୟନା ରାଧିକା ତୁମ ସହିତ ତା'ର କନ୍ଦର୍ପକେଳି ସ୍ମରଣପୂର୍ବକ କାମରସରୂପକ ସାଗରରେ ଉବେଇଟୁବେଇ ହେଉଛି । ତୁମରି ମନୋହର ରୂପକୁ ଧ୍ୟାନ କରି ଜଡ଼ ପାଲଟି ଯାଇଛି । ତା'ପରେ କାମବିଭ୍ରମ ଜାତ ହୋଇଥିବାରୁ ସତେ ଯେପରି, ସେ ତୁମ ସହିତ ରତିକେଳିରେ ମାତିଛି, ସେହି ପ୍ରକାର ଲକ୍ଷଣ ତା'ଠାରେ

ପରିଦୃଷ୍ଟ ହେଉଛି । ତା' ଶରୀରର ରୋମାବଳୀ ଟାଙ୍କୁରି ଉଠୁଛି, ସେ ମୁଖରୁ ସିତ୍କାର ବାହାରକରୁଛି ଏବଂ ରତିକାଳୀନ ଲଜ୍ଜାଜନିତ ବଚ଼ନ କହି ବ୍ୟାକୁଳ ହେଉଛି ।

**ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଞ୍ଚାରିଣି**
**ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।**
**ଇତ୍ୟାକଳ୍ପବିକଳ୍ପତଳ୍ପରଚ଼ନାସଙ୍କଳ୍ପଲୀଳାଶତ —**
**ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି । ୩ ।**

**ପଦ୍ୟ**—ପବନେ ଚଳିଲେ ପତ୍ର ଚତୁର୍ଦ୍ଦିଗେ ଚାହିଁ । ନାନା ଅଳଙ୍କାର ଅଙ୍ଗେ ଭୂଷିତ ହୁଅଇ ।।
ତୋହର ଆଗମ ହେଲା ପ୍ରାୟ ମଣି ସହୀ । ପତ୍ରଶଯ୍ୟାରେ ନିରେଖି ବହୁବେଳ ଧାୟି ।।
କଳ୍ପନା କଲାକ ମନେ ଅତ୍ୟନ୍ତ ହରଷେ । ଶେଯ ବିଛାଇ ବସିଲା ତବ କେଳି ଆଶେ ।।
ଯହୁଁ ତୋତେ ନଦେଖିଲା ସେ କମଳମୁଖୀ । ହୃଦୟରେ କ୍ଷୋଭ ଅତି କାମଶରେ ଦୁଃଖୀ ।।
ଏସନ ପ୍ରକାରେ ନିଶି ନିଅଇ କାମିନୀ । ବାରେ ତ୍ରାହି କର ନାଥ ! ମୋ' ବିନୟ ଘେନି ।।

ଗଦ୍ୟ — ହେ ରସରାଜ ! ତୁମ ଅଙ୍ଗସଙ୍ଗ ବିନା ପ୍ରଣୟିନୀ କିପରି ରାତ୍ରି ଅତିବାହିତ କରିବ ? ଅର୍ଥାତ୍ ବିରହ ତାପରେ ଦଗ୍‌ଧହୋଇ ସେ ପ୍ରାଣତ୍ୟାଗ କରିବା ଅସମ୍ଭବ ନୁହେଁ । ସାମାନ୍ୟ ପତ୍ରଟିଏ ପଡ଼ି ଶବ୍ଦ ହେଲେ, ତୁମେ ଆସୁଛ ବୋଲି ମନେ ମନେ କଳ୍ପନାକରି, ସେ ଅଙ୍ଗରେ ଅଳଙ୍କାରମାନ ଧାରଣ କରୁଛି । ତୁମେ ନେପଥ୍ୟରେ ଆସୁଛ ବୋଲି ଅନୁମାନ କରି ପତ୍ରଶଯ୍ୟା ନିର୍ମାଣ କରିବା ସଙ୍ଗେ ସଙ୍ଗେ, ତୁମକୁ ନଦେଖି ନାନାପ୍ରକାର ଆଶଙ୍କା କରି, ଦୁଃଖିତ ମନରେ ସେହି ଶଯ୍ୟାକୁ ଚାହିଁ ତୁମ ବିଷୟରେ ଭାବୁଛି । ତୁମ ସଙ୍ଗମ ଫଳରେ ତା' ମନରେ ଯେଉଁ ଶତ ଶତ ସଙ୍କଳ୍ପ ଉଙ୍କିମାରୁଛି, ତୁମକୁ ନଦେଖି ତାହା ବ୍ୟର୍ଥ ହୋଇଯାଉଛି । ଏପରି ଭାବରେ ବିରହ ପ୍ରକଟ କରୁଥିବା ସଖୀ ମୋର ତୁମ ବିନା ରାତ୍ରି ବିତାଇବ କିପରି ?

**ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ସୋତ୍କଣ୍ଠବୈକୁଣ୍ଠୋ ନାମ ଷଷ୍ଠଃ ସର୍ଗଃ ।**

□□□

# ସପ୍ତମସର୍ଗ

**ଅତ୍ରାନ୍ତରେ ଚ କୁଳଟାକୁଳବର୍ତ୍ମପାତସଂଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀ ।**
**ବୃନ୍ଦାବନାନ୍ତରମଦୀପୟଦଂଶୁଜାଲୈର୍ଦିକ୍‌ସୁନ୍ଦରୀବଦନଚନ୍ଦନବିନ୍ଦୁରିନ୍ଦୁଃ । ୧ ।**

ପଦ୍ୟ – ଏସନ ସମୟରେ ତହିଁ, ଉଦେ ହୋଇଲା ରଜନୀ ସାଇଁ ।
ଅଭିସାରପଥ ନିରୋଧିଲା ତହୁଁ ତିଥିଦୋଷରେ କଳଙ୍କ ବହି,
ସେ ଚନ୍ଦ୍ରମା, ତା'ର ଦୀପ୍ତି କିରଣ ଆଭାସେ,
ବୃନ୍ଦାବନେ ସୁରଙ୍ଗ ପ୍ରକାଶେ, ପୂର୍ବଦିଗନାରୀ ବଦନ ତିଳକ ଚନ୍ଦନବିନ୍ଦୁ ପ୍ରକାଶେ ॥

ଗଦ୍ୟ – ଘନ ଅନ୍ଧକାର ରାତ୍ରିରେ ଜାରପୁରୁଷଙ୍କ ନିକଟକୁ ଅଭିସାର କରୁଥିବା କୁଳଟା ନାରୀମାନଙ୍କ ମାର୍ଗରୋଧ ଫଳରେ ଯେଉଁ ପାତକ ହୋଇଥାଏ, ସେହି ପାତକ କଳଙ୍କ ରୂପରେ ଯାହାଙ୍କ ଲାଞ୍ଛନ ସ୍ୱରୂପ ପ୍ରକଟ ହୋଇଛି, ସେହି ଚନ୍ଦ୍ରମା; ଦିକ୍‌ସୁନ୍ଦରୀର ଲଲାଟରେ ଚନ୍ଦନବିନ୍ଦୁ ସଦୃଶ ହୋଇ, ବୃନ୍ଦାବନର ଅଭ୍ୟନ୍ତରକୁ ନିଜ କିରଣଜାଳରେ ଉଦ୍ଦୀପିତ କରାଇ ଉଦିତ ହେଲେ ।

**ପ୍ରସରତି ଶଶଧରବିମ୍ବେ ବିହିତବିଳମ୍ବେ ଚ ମାଧବେ ବିଧୁରା ।**
**ବିରଚିତବିବିଧବିଳାପଂ ସା ପରିତାପଂ ଚକାରୋଚ୍ଚୈଃ । ୨ ।**

ପଦ୍ୟ – ଯହୁଁ ଶଶିବିମ୍ବ ପ୍ରକାଶିଲା, ରାଧା ତାପସିନ୍ଧୁ ଉଛୁଳିଲା ।
ବିଳମ୍ବ ଦେଖି ମାଧବ ଆଗମନ ନାନା ପ୍ରକାରେ, ବିଳାପ କଲା ସେ ସୁନ୍ଦରୀ ॥

ଗଦ୍ୟ – ଆକାଶରେ ଚନ୍ଦ୍ରକିରଣ ପ୍ରସାରଲାଭ କରନ୍ତେ, ଶ୍ରୀକୃଷ୍ଣଙ୍କ ଆଗମନରେ ଅତିଶୟ ବିଳମ୍ବ ହେଉଥିବାର ଦେଖି, ବିରହିଣୀ ଶ୍ରୀରାଧା, ନାନାପ୍ରକାର ଆଶଙ୍କା କରି ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲେ ।

*[ମାଳବଗୌଡ଼ରାଗେଣ ଗୀୟତେ (ମାଳବରାଗ ଯତିତାଳାଭ୍ୟାଂ ଗୀୟତେ) (ଗୀତ–୧)]*

**କଥିତସମୟେଽପି ହରିରହହ ନ ଯଯୌ ବନମ୍**
**ମମ ବିଫଳମିଦମମଳରୂପନବଯୌବନମ୍ ।**
**ଯାମି ହେ କମିହ ଶରଣମ୍, ସଖୀଜନବଚନବଞ୍ଚିତା । (କ)**

ପଦ୍ୟ – ବୋଲେ କଷ୍ଟ ମୋହର ହୋଇଲା । ଯହୁଁ ହରି କେବେହେଁ ନଇଲା ॥
ଯୁବା ବୟସେ ଏ ରୂପ ଯଉବନ ମୋର ସକଳ ବିଫଳ ହେଲା;

ହେ ଦଇବ ! ମୁହିଁ କାହାରେ ଶରଣ ଯିବି ? କାମଶର କେସନେ ସହିବି ।
ଭଣ୍ଡିଲା ମୋତେ ସେ ସଖୀ ସହଚରୀ ଆଉ କାହାକୁ କିସ କହିବି, ହେ ଦଇବ !

ଗଦ୍ୟ – ଶ୍ରୀରାଧା ବିରହଦୁଃଖରେ ବ୍ୟଥିତା ହୋଇ କହୁଛନ୍ତି – ହାୟ ! ମୁଁ ସଖୀର କହିବା ଅନୁସାରେ ବଞ୍ଚିତା ହୋଇଛି । ଶ୍ରୀକୃଷ୍ଣ ଯେଉଁ ସମୟରେ ଆସିବା ପାଇଁ କଣ୍ଟ ଦେଇଥିଲେ, ସେସମୟରେ କୁଞ୍ଜବନକୁ ଆସିଲେ ନାହିଁ । ମୋର ଏ ସୁନ୍ଦର ରୂପ, ଆଭୂଷଣ ତଥା ନବଯୌବନ ବୃଥାହୋଇଗଲା । ଏହା କୌଣସିମତେ ନାଗରବର ଶ୍ରୀକୃଷ୍ଣଙ୍କୁ ଆକୃଷ୍ଟ କରି ପାରିଲା ନାହିଁ । ଆଉ ଏ ବନରେ କାହାଠାରେ ଶରଣ ପଶିବି ? (କିମ୍ଵା ଜଳରେ ପଡ଼ି ଆତ୍ମହତ୍ୟା କରିବି ଅଥବା ବିଳାସପୂର୍ଣ୍ଣ କୁଞ୍ଜଗୃହରେ ଆଶ୍ରୟ ଗ୍ରହଣ କରିବି ?)

**ଯଦନୁଗମନାୟ ନିଶି ଗହନମପି ଶୀଳିତମ୍**
**ତେନ ମମ ହୃଦୟମିଦମସମଶରକୀଳିତମ୍ । (ଖ)**

ପଦ୍ୟ – ଯାହାପାଇଁ ଅଇଲି ଏ ବନେ । ନିଶି ତିମିର ଅତି ଗହନେ ।
ସେ କୃଷ୍ଣ ବିନା ଏ ହୃଦୟେ ମୋହର । କାମଶର ବିନ୍ଧେ ଅନୁକ୍ଷଣେ, ହେ ଦଇବ !

ଗଦ୍ୟ – ଯାହାଙ୍କୁ ଅନୁଗମନ କରି ଭୟଙ୍କର ରଜନୀରେ ଗହନବନରେ ପ୍ରବେଶ କଲି, ସେହି କେଳିକଳାନିଧି ଶ୍ରୀକୃଷ୍ଣ ମୋର ହୃଦୟକୁ କାମବାଣରେ ବିଦୀର୍ଣ୍ଣ କଲେ । ହାୟ ! ମୁଁ ଏବେ କାହାଠାରେ ଶରଣ ପଶିବି ?

**ଅହହ କଳୟାମି ବଳୟାଦିମଣିଭୂଷଣମ୍**
**ହରିବିରହଦହନବହନେନ ବହୁଦୂଷଣମ୍ । (ଗ)**

ପଦ୍ୟ – ଅତି ଦୁଃସହ ଭୂଷଣମାନ । ବଳୟାଦି ରତ୍ନମଣିଗଣ ।
ହରିବିରହେ ଏ ବହ୍ନିର ସମାନ । ବହି ନ ପାରଇ ଅନୁକ୍ଷଣ, ହେ ଦଇବ ।।

ଗଦ୍ୟ – ହାୟ ! କ'ଣ କରିବି ? ଶ୍ରୀକୃଷ୍ଣଙ୍କ ସନ୍ତୋଷ ବିଧାନ ନିମିତ୍ତ ମୁଁ ଏହି ରତ୍ନବଳୟ ଆଦି ଭୂଷଣ ଧାରଣକରିଥିଲି । କିନ୍ତୁ ତାଙ୍କ ବିରହରେ ଏବେ ମୋର ଶରୀର ଜଳିପୋଡ଼ିଯାଉଛି । ଏ ଅଳଙ୍କାରଗୁଡ଼ିକ ଏବେ ମୋ' ପକ୍ଷରେ ଦୋଷଯୁକ୍ତ ହୋଇଛି, ଅର୍ଥାତ୍ ଏହି ରତ୍ନଭୂଷଣ ପ୍ରିୟତମଙ୍କ ବିନା ମୋ' ପକ୍ଷରେ ଭାରସ୍ୱରୂପ ହୋଇଛି ।

**ମମ ମରଣମେବ ବରମିତି ବିତଥକେତନା ।**
**କିମିହ ବିଷହାମି ବିରହାନଳମଚେତନା । (ଘ)**

ପଦ୍ୟ – ଏହି, ବିଅର୍ଥ ସଙ୍କେତ ସ୍ଥାନ । ଏକାକିନୀ ମୁଁ ଘୋର ଅରଣ୍ୟ ।।
କୃଷ୍ଣବିନୁ ଏ' ଶରୀର ଶୂନ୍ୟ । କରୁଅଛଇ ଚିତ୍ତ ଦହନ ।।
ସହି ନପାରଇ ବିରହ ଅନଳ, ସୁଖ ହୋଇବ ଗଲେ ଜୀବନ, ହେ ଦଇବ ।।

ଗଦ୍ୟ – ହାୟ ! ଏହି ଘନ ଅରଣ୍ୟ ମଧ୍ୟରେ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ବିରହ ରୂପକ ଦାବାନଳକୁ ମୋ' ପରି ସୁକୁମାରୀ ଅବଳା ସହିବ କିପରି ? ଅର୍ଥାତ୍ ବିରହାନଳର ଜ୍ୱାଳା ମୁଁ କିପରି ସହ୍ୟ କରିବି ? ମୋର ଏହି ଜ୍ଞାନଶୂନ୍ୟ ଶରୀରରେ ବା ଲାଭ କ'ଣ ? ଏହାଠାରୁ ମରଣ ବରଂ ଶ୍ରେୟସ୍କର ।

ମାମହହ ବିଧୁରୟତି ମଧୁରମଧୁଯାମିନୀ
କାପି ହରିମନୁଭବତି କୃତସୁକୃତକାମିନୀ । (ଙ)

ପଦ୍ୟ – ମଧୁଯାମିନୀ ଚନ୍ଦ୍ର କିରଣ । ମୋତେ ଦୁଃଖ ଦେଇ ନାରାୟଣ ।
କେବଣ କାମିନୀ ପୁଣ୍ୟଗୁଣବତୀ, ହରି
ତା' ତୁଲେ କଲେ ରମଣ, ହେ ଦଇବ !
କେଉଁ ସୁକୃତ ଫଳେ କାମିନୀ । ବସିଥିବ ହରି କୋଳେ ଘେନି ।
କେଉଁ ପାପଫଳେ କରମ ଅବଳେ
ଝୁରଇ ମୁଁ ଗୁଣ ଗୁଣି, ହେ ଦଇବ !

ଗଦ୍ୟ – ହାୟ, ଏହି ଆନନ୍ଦମୟ ବସନ୍ତକାଳୀନ ମଧୁଯାମିନୀ ମୋତେ ଅତ୍ୟନ୍ତ କ୍ଳେଶ ପ୍ରଦାନ କରୁଛି ଏବଂ ଅନ୍ୟ କୌଣସି ଗୋପକାମିନୀ ବହୁପୁଣ୍ୟ ଅର୍ଜ୍ଜନ କରିଥିବାରୁ, ଶ୍ରୀକୃଷ୍ଣଙ୍କୁ ପାଇ ଆଜିର ଏହି ବାସନ୍ତୀ ରଜନୀରେ ଆନନ୍ଦ ଅନୁଭବ କରୁଛି ।

କୁସୁମସୁକୁମାରତନୁମତନୁଶରଲୀଳୟା
ସ୍ରଗପି ହୃଦି ହନ୍ତି ମାମତିବିଷମଶୀଳୟା । (ଚ)

ପଦ୍ୟ – ତନୁ କୁସୁମହୁଁ ସୁକୁମାର । ପୀଡ଼ା ଦେଉଛି ମଦନଶର ।
ପୁଷ୍ପମାଳା ହୃଦେ ବହି ନ ପାରଇ,
ମନ ବିଚ୍ଛିନ୍ନ ଅତି ମୋହର, ହେ ଦଇବ !

ଗଦ୍ୟ – ହାୟ ! ଅତି କୋମଳ ଏହି ପୁଷ୍ପମାଳା ମୋ' ହୃଦୟରେ ଲମ୍ବିତ ହୋଇ ମୋତେ ଅତ୍ୟନ୍ତ ବିଷମ ଦୁଃଖ ଦେଉଛି । ମୋର ଶରୀର ପୁଷ୍ପପରି କୋମଳ । ତେଣୁ ସେହି କୁସୁମମାଳା କାମଦେବଙ୍କ ପଞ୍ଚଶର ପରି ମୋତେ ବିଷମ କଷ୍ଟ ଦେଉଛି ।

ଅହମିହ ନିବସାମି ବିଗଣିତବନବେତସା
ସ୍ମରତି ମଧୁସୂଦନୋ ମାମପି ନ ଚେତସା । (ଛ)

ପଦ୍ୟ – ବସି ନ ପାରଇ ଏହୁ ବନେ । ଲତାକୁଞ୍ଜ ଭୟଙ୍କର ସ୍ଥାନେ ।
ସୁମରିଣ ମଧୁସୂଦନକୁ ଚିତ୍ତେ, ମୋର ହୃଦ ଦହୁଛି ଦହନେ, ହେ ଦଇବ !
ଯାହାପାଇଁ ସହିଲି କଷଣ । ସେହୁ ଚିତ୍ତେ ନ କଲେ ସ୍ମରଣ ।

ଭୁଲିଗଲେ ମୋତେ କଷ୍ଟ ଦେଇ ଏତେ,
ସେହୁ ଅଟନ୍ତି ଅତି ଦାରୁଣ, ହେ ଦଇବ !

ଗଦ୍ୟ – ହାୟ ! ମୁଁ ଏହି ଗହନବନ ମଧ୍ୟରେ ଥିବା ବେତସକୁଞ୍ଜରେ ଭୟଙ୍କରତାକୁ ଭ୍ରୂକ୍ଷେପ ନକରି, ଶ୍ରୀକୃଷ୍ଣଙ୍କ ପାଇଁ ଅପେକ୍ଷା କରି ବସିଛି । ଅଥଚ ମଧୁସୂଦନ ଶ୍ରୀକୃଷ୍ଣ ମୋତେ ଥରେହେଲେ ମନେପକାଉନାହାନ୍ତି !

ହରି ଚରଣଶରଣଜୟଦେବକବିଭାରତୀ
ବସତୁ ହୃଦି ଯୁବତିରିବ କୋମଳକଳାବତୀ । (ଜ)

ପଦ୍ୟ – ଶିରୀ ଜୟଦେବ ଏହା ଭଣି । ହରି ସ୍ମରଣେ ମଧୁରବାଣୀ ।
ସନ୍ତୁଚିତ୍ତ ସେବୁ ଶ୍ରୀକୃଷ୍ଣ ଚରଣେ ସୁକୁମାରୀ କଳାବତୀ ଘେନି, ହେ ସୁଜନେ ॥

ଗଦ୍ୟ – ଶ୍ରୀହରିଙ୍କ ଶ୍ରୀଚରଣରେ ଶରଣ ମହାକବି ଜୟଦେବଙ୍କ ରଚନାବଳୀପୂର୍ଣ୍ଣ ଏହି ଗୀତଗୋବିନ୍ଦ, କୋମଳାଙ୍ଗୀ ଚଉଷଠି କଳାନିପୁଣା ଯୁବତୀ ପରି ରସିକ-ଭକ୍ତଜନମାନଙ୍କର ହୃଦୟକୁ ମୋହିତକରୁ ।

ତତ୍କିଂ କାମପି କାମିନୀମଭିସୃତଃ କିଂବା କଳାକେଳିଭି -
ର୍ବଦ୍ଧୋ ବନ୍ଧୁଭିରନ୍ଧକାରିଣି ବନାଭ୍ୟର୍ଣ୍ଣେ କିମୁଦ୍‌ଭ୍ରାମ୍ୟତି ।
କାନ୍ତଃ କ୍ଳାନ୍ତମନା ମନାଗପି ପଥି ପ୍ରସ୍ଥାତୁମେବାକ୍ଷମଃ
ସଙ୍କେତୀକୃତମଞ୍ଜୁବଞ୍ଜୁଳଲତାକୁଞ୍ଜେଽପି ଯନ୍ନାଗତଃ । ୩ ।

ପଦ୍ୟ – ଯେବେ ନିଶ୍ଚୟ ନଇଲେ ହରି । ମୁହିଁ ଜାଣୁଅଛି ହେତୁ କରି ।
କେବଣ କାମିନୀ ସଙ୍ଗତରେ ଅବା କେଳି କରୁଅଛନ୍ତି ମୁରାରି, ସେ ମାଧବ,
ଅବା ପ୍ରୀତିବନ୍ଧୁଜନମାନ, ଆସିବାକୁ କଲେ ବିରୋଧନ ।
ନୋହିଲେ ଅବା ଅନ୍ଧାକାରେ ଆସନ୍ତେ ପଥେ ଭ୍ରମି ବୁଲନ୍ତି ବିପିନ, ସେ ମାଧବ,
ଅବା ତନୁ ଅଶକତ ହୋଇ, ଚାଲି ଆସିବାକୁ ବଳ ନାହିଁ ।
ନୋହିଲେ ସଙ୍କେତ କୁଞ୍ଜଲତାଗୃହେ ହରି, ନଇଲେ ତ କିସ ପାଇଁ, ସେ ମାଧବ ॥

ଗଦ୍ୟ – ମୋତେ ସଙ୍କେତ ଦେଇଥିବା ମନୋହର ବେତସଲତାକୁଞ୍ଜକୁ ପ୍ରାଣପ୍ରିୟ ଶ୍ରୀକୃଷ୍ଣ ଆସିଲେ ନାହିଁ କାହିଁକି ? କେଉଁ ଗୁଣବତୀ କାମିନୀର ପ୍ରେମରେ ମାତି ସେହିଠାରେ ରାତିଟି ବିତାଇଦେଲେ କି ? ଅଥବା କେଉଁ ରସିକସଖାମାନଙ୍କ ସହ ରସକଉତୁକରେ ମାତି, ଆସିବାକୁ ଭୁଲିଗଲେ କି ? ଏହା ମଧ୍ୟ ହୋଇପାରେ ଯେ, ଘନଘୋର ଅନ୍ଧକାରମୟ ରଜନୀରେ ଏହି ବନମଧ୍ୟରେ ପଥ ଭୁଲିଯାଇ ହୁଏତ ସେ ଏଣେତେଣେ ବୁଲୁଥିବେ ! ସେ ମୋ'ରି ପରି ବିରହ ବେଦନାରେ ସଢ଼ି ହୁଏତ କ୍ଳାନ୍ତ ହୋଇ, ଏତେ ଦୂର ପଥ ଅତିକ୍ରମ କରିବାରେ ଅସମର୍ଥ ହୋଇଥିବେ । ନୋହିଲେ ମୋର ପ୍ରାଣପ୍ରିୟ କାନ୍ତ କଷ୍ଟ ଦେଇ ନ ଆସିଲେ କାହିଁକି ?

**ଅଥାଗତାଂ ମାଧବମନ୍ତରେଣ ସଖୀମିୟଂ ବୀକ୍ଷ୍ୟ ବିଷାଦମୂକାମ୍ ।**
**ବିଶଙ୍କମାନା ରମିତଂ କୟାପି ଜନାର୍ଦ୍ଦନଂ ଦୃଷ୍ଟବଦେତଦାହ । ୪ ।**

ପଦ୍ୟ – ଏଥୁ ଅନନ୍ତରେ ସହଚରୀ । କୃଷ୍ଣ ସନ୍ନିଧୁ ଆସେ ଚତୁରୀ ।
ସେ ରାଧାର ବିରହ ଅତିଦୁଃଖ ଦେଖି ମନେ ବିଷାଦ ଅଛି ପୂରି, ସେ ଚତୁରୀ,
ଆସି ମିଳିଲା ରାଧାର ପାଶ । ରାଧା ଦେଖିଲା ଦୂତୀ ବିରସ ।
ମନେ ବିଚାରିଲା ମାଧବ ନଇଲେ ଆନ ଯୁବତୀ କଲା ବିଳାସ, ସେ ଶ୍ରୀହରି !!
କୃଷ୍ଣକ୍ରୀଡ଼ା ଦେଖିଲାର ପ୍ରାୟେ । ସଖୀ ଅଗ୍ରତେ ବଚନ କହେ ।
ଯେବଣ ଯୁବତୀ ରମିଲା ଶ୍ରୀପତି ତା'ର ଗୁଣ ଅବଶେଷ ନୋହେ, ଗୋ ସଜନୀ !!

ଗଦ୍ୟ – ଏତିକିବେଳେ ଶ୍ରୀକୃଷ୍ଣଙ୍କୁ ସଙ୍ଗରେ ନ ଆଣି ଦୁଃଖରେ ବିଷଣ୍ଣବଦନା ତଥା କାର୍ଯ୍ୟରେ ଅସଫଳ ହୋଇଥିବାରୁ ମଉନ ଅବଲମ୍ବନ କରିଥିବା ସଖୀକୁ ଦେଖି, ଶ୍ରୀରାଧା ହଠାତ୍ ଆଶଙ୍କା କଲେ – ଶ୍ରୀକୃଷ୍ଣ ଆଉ କେଉଁ ରମଣୀ ସହିତ ରତିକ୍ରୀଡ଼ାରେ ମାତି ମୋ' ନିକଟକୁ ଆସିଲେ ନାହିଁ କି ? ସେ ସେହି ଚିନ୍ତାରେ ଏତେ ମଜ୍ଜିଗଲେ ଯେ, ଅନ୍ୟ ରମଣୀ ସହିତ ଶ୍ରୀକୃଷ୍ଣ ରତିକେଳିରେ ମାତିଥିବାର ଦୃଶ୍ୟ ତାଙ୍କ ଆଖି ଆଗରେ ଭାସିଉଠିଲା । ଶ୍ରୀରାଧା ସେହିପରି ଅବସ୍ଥାରେ ସଖୀକୁ ବ୍ୟସ୍ତ ହୋଇ କହିଲେ ।

*[ ବସନ୍ତ ରାଗେଣ ଗୀୟତେ ( ଯତିତାଳାଭ୍ୟାଂ ଗୀୟତେ ) (ଗୀତ – ୨) ]*

**ସ୍ମରସମରୋଚିତବିରଚିତବେଶା । ଗଳିତକୁସୁମଦରବିଲୁଳିତକେଶା ।**
**କାପି ମଧୁରିପୁଣା ବିଳସତି ଯୁବତିରଧିକଗୁଣା । (କ) ଧ୍ରୁବମ୍ ।**

ପଦ୍ୟ – ସେ ଯେ ମଦନ-ସମରେ ବାମା । ତା'ର ବେଶ ତ ଆନ ଉପମା ।
ରତିରସରେ ସେ ମୁକଳା-କବରୀ ଖସି ପଡୁଛି କୁସୁମସୀମା, ଗୋ ସଜନି !

ଗଦ୍ୟ – ସଖି, ମୋ'ଠାରୁ ଅଧିକ ଗୁଣବତୀ ଯୁବତୀ ପ୍ରିୟତମ ଶ୍ରୀକୃଷ୍ଣଙ୍କ ସୁରତ କ୍ରୀଡ଼ାରେ ମାତିଛି । ସେ କାମିନୀ ସୁରତକାଳୀନ ବେଶଭୂଷାରେ ସଜ୍ଜିତା ହୋଇଛି । ଶ୍ରୀକୃଷ୍ଣ ସେହି କାମିନୀର କେଶ ଆକର୍ଷଣ କରି ଆଲିଙ୍ଗନ ଓ ଚୁମ୍ବନ ଦାନ କରୁଥିବାରୁ, ତା' ଗଭାରେ ଥିବା ଫୁଲଗୁଡ଼ିକ ଖସିପଡ଼ିଛି ଏବଂ କେଶବନ୍ଧନ ମଧ୍ୟ ଶିଥିଳ ହୋଇଯାଇଛି ।

**ହରି ପରିରମ୍ଭଣବଳିତବିକାରା**
**କୁଚକଳଶୋପରି ତରଳିତହାରା । (ଖ)**

ପଦ୍ୟ – ହରି ଆଲିଙ୍ଗନେ ମତି ତା'ର । ହୋଇ ଅଛଇ ଚିତ୍ତ ବିକାର ।
କୁଚକଳଶର ଉପରେ ଶୋଭିତ, ଢାଳେ ତରଳ ମୁକୁତାହାର, ଗୋ ସଜନି !

ଗଦ୍ୟ – ସଖି, ସେହି ଗୁଣବତୀ କାମିନୀ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିବାରୁ, ତା' ଶରୀର ରୋମାଞ୍ଚିତ ହୋଇଛି ଏବଂ କଳଶ ସଦୃଶ ତା'ର

ଉନ୍ନତ ସ୍ତନଯୁଗଳ ଉପରେ ମୁକ୍ତା ହାର ଚଞ୍ଚଳ ହୋଇଉଠିଛି । ଏଥିରୁ ମନେହେଉଛି, ବିପରୀତ ରତିନିପୁଣା ସେହି ନାୟିକା ଶ୍ରୀକୃଷ୍ଣଙ୍କୁ ପୁରୁଷାୟିତ ରତିକ୍ରୀଡ଼ାରେ ମୁଗ୍ଧ କରିଛି ।

**ବିଚ଼ଳଦଳକଲଳିତାନନଚ଼ନ୍ଦ୍ରା**
**ତଦଧରପାନରଭସକୃତତନ୍ଦ୍ରା । (ଗ)**

ପଦ୍ୟ – ତା'ର ଚଳନ୍ତେ ଅଳକାପନ୍ତି । ମୁଖ ଲାବଣ୍ୟ ଚନ୍ଦ୍ରମାକାନ୍ତି ।
ଅପାର ପ୍ରିୟ ଅଧର ଚୁମ୍ବନରେ ତା'ର ଝକିତ ବଦନ ଜ୍ୟୋତି, ଗୋ ସଜନି !

ଗଦ୍ୟ – ସଖି, ସେହି କାମିନୀର ଚନ୍ଦ୍ର ସଦୃଶ ମୁଖମଣ୍ଡଳ ଉପରେ କୁଞ୍ଚିତ କେଶ କେରିକେରି ହୋଇ ପଡ଼ିଛି ଏବଂ ଶ୍ରୀକୃଷ୍ଣଙ୍କ ଅଧରାମୃତ ପାନକରି ସେ ତନ୍ଦ୍ରିଳ ଅଳସରେ ଘାରି଼ହୋଇଛି ।

**ଚଞ୍ଚଳକୁଣ୍ଡଳଦଳିତକପୋଳା**
**ମୁଖରିତରସନଜଘନଗତିଲୋଳା । (ଘ)**

ପଦ୍ୟ – ବିପରୀତ ରତିରଙ୍ଗ କାଳେ । ଲୁଳେ କୁଣ୍ଡଳ ଗଣ୍ଡଯୁଗଳେ ।
କଟିମେଖଳା କିଙ୍କିଣୀ ଧ୍ୱନି ଶୁଭେ, ଯହୁଁ ଜଘନଗତିଚ଼ଞ୍ଚଳେ, ଗୋ ସଜନି ।।

ଗଦ୍ୟ – ସଖି, ସେହି କାମିନୀର ଗଣ୍ଡଯୁଗଳରେ ତା'ର କର୍ଣ୍ଣକୁଣ୍ଡଳ ବାଜି ତାହା ବିଦଳିତ ହେଲା ପ୍ରାୟ ଦିଶୁଛି । ଆଉ ମଧ ବିପରୀତ ରତିନିପୁଣା ସେହି ରମଣୀର କଟିଦେଶରେ ଚନ୍ଦ୍ରହାର ଚଞ୍ଚଳ ହୋଇଉଠିବାରୁ, ସେଥିରୁ ମଧୁରଧ୍ୱନି ବାହାରି ବନସ୍ଥଳକୁ ମୁଖରିତ କରୁଛି ।

**ଦୟିତବିଲୋକିତଲଜ୍ଜିତ ହସିତା**
**ବହୁବିଧକୂଜିତରତିରସରସିତା । (ଙ)**

ପଦ୍ୟ – ରତିରସରେ ରସିଲା ବାଳା । ନାନା ପ୍ରକାରେ ଚାଟୁ କହିଲା ।
ଚାହିଁଲା ଯହୁଁ ସେ କୃଷ୍ଣ ବଦନକୁ ଦରହସିତେ ଲଜ୍ଜିତା ହେଲା, ସେ କାମିନୀ ।।

ଗଦ୍ୟ – ସଖି, ସେ କାମିନୀ ବିପରୀତ ରତି କାଳରେ ପ୍ରିୟତମଙ୍କ ମୁଖକୁ ଅନାଇଦେଇ, ହାସ୍ୟମିଶ୍ରିତ ଲଜ୍ଜାରେ ନିଜେ ଉତ୍‌ଫୁଲ୍ଲିତା ହୋଇଉଠୁଛି ଏବଂ ରତିଶ୍ରମ ଖେଦରେ ତା' ମୁଖରୁ ପାରାବତ ଓ କପୋତମାନଙ୍କ ଧ୍ୱନି ବାହାରି ତାହାକୁ ରତିରସରେ ରସାଣିତ କରୁଛି ।

**ବିପୁଳପୁଲକପୃଥୁବେପଥୁଭଙ୍ଗା**
**ଶ୍ୱସିତନିମୀଳିତବିକସଦନଙ୍ଗା । (ଚ଼)**

ପଦ୍ୟ – ଅତି ସଘନ ବିପୁଳ ତା'ର । କମ୍ପମାନ ହୁଏ ରୋମଜାଳ ।
ନିଃଶ୍ୱାସ ମରୁତ ଛାଡ଼ଇ ତ୍ୱରିତ କି ଏ ପ୍ରକାଶ କରୁଛି ମାର, ଗୋ ସଜନି !

ଗଦ୍ୟ – ସଖି ! ସେ କାମିନୀର ଶରୀରରେ ରୋମାବଳୀ ଟାଙ୍କୁରି ଉଠିଥିବାରୁ, ସେ ରତିରସ ଆସ୍ୱାଦନରେ ପରିତୃପ୍ତି ଲାଭକରିଛି । ତେଣୁ ତା' ଶରୀରର ରୋମାବଳୀ ତରଙ୍ଗାୟିତ ଗତିରେ କମ୍ପିତହେଉଛି । ତା' ନାସାରୁ ତୃପ୍ତିଜନିତ ନିଃଶ୍ୱାସ ଓ ଅର୍ଦ୍ଧନିମୀଳିତ ନେତ୍ରଯୁଗଳରୁ ମନେହେଉଛି ତା' ମନର କାମବାସନା ପରିତୃପ୍ତ ହୋଇଛି ।

**ଶ୍ରମଜଲକଣଭରସୁଭଗଶରୀରା**
**ପରିପତିତୋରସିରତିରଣଧୀରା । (ଛ)**

ପଦ୍ୟ – ଶ୍ରମେ ସ୍ୱେଦଟୋପାମାନ ତା'ର । ଏଣେ ଶୋଭିତ ଯୌବନଭାର ।
ପଡ଼ି ସ୍ୱେଦନୀର କୃଷ୍ଣ ହୃଦୟର ରତିରସକୁ ଅତି ନିର୍ଭର, ସେ ତରୁଣୀ ।।
ରତିରଣେ ପଣ୍ଡିତା ସେ ନାରୀ । କଉତୁକେ ରତିକେଳି ସାରି ।
ବିମୁଗ୍ଧ ଅନ୍ତରେ ଶୋଇଛି ନିର୍ଭରେ ପ୍ରିୟତମବକ୍ଷକୁ ଆବୋରି, ସେ ତରୁଣୀ ।।

ଗଦ୍ୟ – ସଖି, ସେ ସୌଭାଗ୍ୟବତୀ ନାରୀ ନିଶ୍ଚିତଭାବରେ ରତିରଣରେ ପଣ୍ଡିତା । ତେଣୁ ସେ ଦକ୍ଷତାର ସହିତ ସୁରତ କେଳି ଶେଷକରି ପ୍ରିୟତମଙ୍କ ବକ୍ଷ ଉପରେ ଶୟନକରିଛି । ରତିରସରେ ମାତିଥିବାରୁ, ଶ୍ରମରେ ତା'ର ଶରୀର ଝାଳରେ ଜୁଡୁବୁଡୁ ହୋଇଯାଇଛି । ତା' ଫଳରେ ତା'ର ସୌନ୍ଦର୍ଯ୍ୟ ଆହୁରି ବୃଦ୍ଧିଲାଭ କରିଛି ।

**ଶ୍ରୀଜୟଦେବଭଣିତହରିରମିତମ୍**
**ଜନୟତୁ କଲିକଲୁଷଂ ପରିଶମିତମ୍ । (ଜ)**

ପଦ୍ୟ – ରାଧାକୃଷ୍ଣ ରତିରସ ସାର । ଜୟଦେବ କହିଲା ଗୀତର ।।
କଳିଯୁଗ ଚିନ୍ତା ଅଘ ମହାଘୋର ନାଶକରେ ଶ୍ରୋତା-ବକତାର, ହେ ସୁଜନେ !

ଗଦ୍ୟ – ମହାକବି ଶ୍ରୀଜୟଦେବଙ୍କ ବର୍ଣ୍ଣିତ ଶ୍ରୀହରିଙ୍କ ରତିକେଳିବର୍ଣ୍ଣନ ଜନମାନସରୁ କଳିଯୁଗର ପାତକ ପ୍ରଶମିତ କରୁ ।

**ବିରହପାଣ୍ଡୁରମୁରାରିମୁଖାମ୍ବୁଜ-**
**ଦ୍ୟୁତିରୟଂ ତିରୟନ୍ନପି ଚେତନାମ୍ ।**
**ବିଧୁରତୀବ ତନୋତି ମନୋଭୁବଃ**
**ସହୃଦୟେ ହୃଦୟେ ମଦନବ୍ୟଥାମ୍ । ୫ ।**

ପଦ୍ୟ – ଦେଖ ସଖି ! ଏହୁ ଶଶଧର । ଦ୍ୟୁତି କୃଷ୍ଣବଦନ ଆକାର ।
ବିରହେ ଯେହ୍ନେ ପାଣ୍ଡୁରବର୍ଣ୍ଣ ଦିଶେ ଚନ୍ଦ୍ର ଦିଶଇ ସେହିପ୍ରକାର ଗୋ ସଜନି !
ମୋର ଚେତନା ହରୁଛି ସଖି ! ମୁହିଁ ନ ପାରଇ ବିଧୁ ଦେଖି ।
ମଦନସଖା ଏ ନିର୍ଦ୍ଦୟ ଅଟଇ ହୃଦ ପୀଡ଼ିତ ହେଉଛି ଦେଖି, ଗୋ ସଜନି !

ଗଦ୍ୟ – ଆଗୋ ସହୃଦୟବତି ! ମୋ' ବିରହ ଦୁଃଖରେ ପାଣ୍ଡୁରବର୍ଣ୍ଣ ଦେଖାଯାଉଥିବା ଶ୍ରୀକୃଷ୍ଣଙ୍କ ମୁଖ ପରି ଶୋଭାଶାଳୀ ଏହି ଚନ୍ଦ୍ର ମୋ' ହୃଦୟଗତ ବେଦନାକୁ ଦୂର କରୁଥିଲେ ମଧ, ସେ କାମଦେବର ସଖା ହୋଇଥିବାରୁ ମୋ' ଅନ୍ତରରେ କାମବ୍ୟଥାକୁ ବୃଦ୍ଧିକରାଉଛି ।

*[ ଗୁର୍ଜ୍ଜରୀ ରାଗେଣ ଗୀୟତେ (ଏକତାଳୀ ତାଳେନ ଗୀୟତେ) (ଗୀତ – ୩) ]*

ସମୁଦିତମଦନେ ରମଣୀବଦନେ ଚୁମ୍ବନବଳିତାଧରେ ।
ମୃଗମଦତିଳକଂ ଲିଖତି ସପୁଲକଂ ମୃଗମିବ ରଜନୀକରେ ।
ରମତେ ଯମୁନାପୁଳିନବନେ ବିଜୟୀ ମୁରାରିରଧୁନା । (କ) । ଧ୍ରୁବମ୍ ।

ପଦ୍ୟ – ଯମୁନାତୀରେ କୁଞ୍ଜକୁଟୀରେ ବିଜୟ କରି ହରି ।
ରମଣ କଲା ଯେବଣ ବାଳା ଅତି ସରାଗ କରି ।।
ସୁରତି ଶେଷେ ମଦନରସେ ରମଣୀବଦନରେ ।
ଚୁମ୍ବନ ଦେବ ବୋଲି ମାଧବ ବଳିଅଛି ଅଧରେ ।।
ଅଳକ ସଜ କରି ତିଳକ କସ୍ତୁରୀ ନିରିମାଣି ।
କି ସେ ସମ୍ପୂର୍ଣ୍ଣଚନ୍ଦ୍ର ଉପରେ କଳଙ୍କ ପ୍ରାୟ ମଣି ।।

ଗଦ୍ୟ – ହେ ସଖି ! ଯମୁନାର ବାଲୁକାମୟ ପୁଳିନରେ ଶ୍ରୀକୃଷ୍ଣ ନିଃଶଙ୍କ ଚିତ୍ତରେ ବର୍ତ୍ତମାନ ଅତ୍ୟନ୍ତ ପ୍ରମୋଦରେ ରସକେଳି ଆରମ୍ଭ କରିଛନ୍ତି । ମଦନାବସ୍ଥା ଶରୀରରେ ଜାତହୋଇଥିବାରୁ, ପ୍ରିୟତମ ଶ୍ରୀକୃଷ୍ଣଙ୍କୁ ଚୁମ୍ବନ ଦେବାପାଇଁ ସଙ୍କୁଚିତ ହୋଇଛି ମୁଖମଣ୍ଡଳ ଯାହାର, ସେହି ତରୁଣୀର ଚନ୍ଦ୍ର ସଦୃଶ ବଦନମଣ୍ଡଳରେ ଶ୍ରୀକୃଷ୍ଣ କସ୍ତୁରୀରେ ଚିତ୍ର ଅଙ୍କନ କରୁଛନ୍ତି । ସେହି କସ୍ତୁରୀଚିତା ଚନ୍ଦ୍ରରେ କଳଙ୍କ ଥିବା ପରି ରମଣୀର ବଦନଚନ୍ଦ୍ରରେ ଶୋଭାପାଉଛି ।

ଘନଚୟରୁଚିରେ ରଚୟତି ଚିକୁରେ ତରଳିତତରୁଣାନନେ
କୁରୁବକକୁସୁମଂ ଚପଳାସୁଷମଂ ରତିପତିମୃଗକାନନେ । (ଖ)

ପଦ୍ୟ – ଅସିତ ଘନ ପଟଳ ଚାରୁ ଚିକୁର ଶୋଭା ତା'ର ।
ରଚିତ ଶୁଭ ସୁମଞ୍ଜ କରି ରାମା କବରୀଭାର ।।
କୁରୁଣ୍ଟ ସୁମନସରେ ଗଭା ମଣ୍ଡିଛି ପନ୍ତି ପନ୍ତି ।
ଯେସନେ ଶ୍ୟାମ ଜଳଧରରେ ତଡ଼ିତ ଲତା ଭ୍ରାନ୍ତି ।।
ଜାଣି ମଦନ କୁରଙ୍ଗବନ ପ୍ରାୟେକ ଶୋଭା କି ସେ ।
ନିର୍ମଳତର ବଦନ ତା'ର ଲାବଣ୍ୟ ରୁଚି ଦିଶେ ।।
ଦେଖିଲେ ଅତି ତରଳମତି ହୋଇବେ ଯୁବାଜନ ।
କୃଷ୍ଣ ଯାହାକୁ ରମେ ତାହାକୁ ସମାନ ନାହିଁ ଆନ ।।

**ଗଦ୍ୟ –** ହେ ସଖି, ସେହି ରମଣୀର କେଶପାଶ କାମଦେବରୂପକ ମୃଗର କାନନ ସଦୃଶ ଶୋଭାପାଉଛି । ସେ କେଶପାଶକୁ ଦେଖିଲେ ତରୁଣମାନଙ୍କ ମନ ଚଞ୍ଚଳ ହୋଇଉଠୁଛି । ଆହୁରି ମଧ୍ୟ କଳାମେଘଖଣ୍ଡ ପରି ସେ କେଶପାଶ ଘନଚିକ୍କଣ ଦେଖାଯାଉଛି । ସେହି କେଶପାଶରେ ଶ୍ରୀକୃଷ୍ଣ ବିଜୁଳିପରି ସୁନ୍ଦର ତଥା ମନୋହର କୁରୁବକଫୁଲ (ସେବତୀ) କୁ ନେଇ ଗଭା ସଜାଡ଼ିଦେଉଛନ୍ତି । ତାହା ମେଘପଟଳରେ ବିଜୁଳି ପରି ଶୋଭାପାଉଛି ।

**ରତିଗୃହଜଘନେ ବିପୁଳାପଘନେ ମନସିଜକନକାସନେ**
**ମଣିମୟରସନଂ ତୋରଣହସନଂ ବିକିରତି କୃତବାସନେ । (ଗ)**

**ପଦ୍ୟ –** ରତିସଦନ ଘନଜଘନ ବିପୁଳ ଅତି ପ୍ରଭା ।
ମଦନରାୟ ଆସନ କି ଏ ଜମ୍ବୁନଦର ଆଭା ।।
ମର୍କତମଣି ହେମକିଙ୍କିଣୀ ମେଖଳା ଜଟିଦେଶେ ।
ଖଞ୍ଜିଲେ ହରି ମନେ ବିଚାରି ଆଛାଦି ଝାନ୍‌ବାସେ ।।

**ଗଦ୍ୟ –** ହେ ସଖି, କାମଦେବଙ୍କ ନିମିତ୍ତ ସୁବର୍ଣ୍ଣର ଆସନ ସଦୃଶ, ଶୃଙ୍ଗାରର ଆଶ୍ରୟସ୍ଥଳ ସେହି ରମଣୀର ବିପୁଳଜଘନ ଉପରେ ଶ୍ରୀକୃଷ୍ଣ ମଣିମୟ ଚନ୍ଦ୍ରହାର ପିନ୍ଧାଇ ଦେଉଛନ୍ତି । ସେହି ମଣିମୟ କାଞ୍ଚିସୂତ୍ରଟି ମନୋରମ ତୋରଣକୁ ଉପହାସ କରୁଛି । ଶ୍ରୀକୃଷ୍ଣଙ୍କ ମନକୁ ବଶୀଭୂତ କରିବା ପାଇଁ ଯେଉଁ ଜଘନ ଅତ୍ୟନ୍ତ ଆମୋଦଦାୟକ ହୋଇଛି, ଶ୍ରୀକୃଷ୍ଣ ମଣିନିର୍ମିତ ଅଣ୍ଟାସୂତା ସେହି ଜଘନରେ ପିନ୍ଧାଇଦେଇ କାମବାସନାରେ ଅଧିକରୁ ଅଧିକ ବଶୀଭୂତ ହୋଇଛନ୍ତି । (ସେହି ମେଖଳାକୁ ସୂକ୍ଷ୍ମବସ୍ତ୍ର ଉପରେ ପିନ୍ଧାଇଦେଉଛନ୍ତି ।)

**ଚରଣକିଶଳୟେ କମଳାନିଳୟେ ନଖମଣିଗଣପୂଜିତେ**
**ବହିରପବରଣଂ ଯାବକଭରଣଂ ଜନୟତି ହୃଦି ଯୋଜିତେ । (ଘ)**

**ପଦ୍ୟ –** ଚରଣ ନବ ପଲ୍ଲବ ରାମା ଲାବଣ୍ୟ ଶିରୀସ୍ଥାନ ।
ନଖ ନିର୍ମଳ ଅମଳ ମଣିଗଣ ଜ୍ୟୋତି ସମାନ ।।
ସେ ପାଦ ବେନି ଘେନିଣ ହରି ହୃଦୟତଟେ ନେଇ ।
କରେ ସୁବେଶ ମନେ ହରଷ ଅଲକ୍ତରସ ଦେଇ ।।

**ଗଦ୍ୟ –** ହେ ସଖି ! ସେହି ରମଣୀର ନଖରୂପକ ମଣିଗଣଯୁକ୍ତ ଶୋଭାର ଭଣ୍ଡାର, ନବପଲ୍ଲବ ସଦୃଶ ପାଦ ଦୁଇଟିକୁ ଶ୍ରୀକୃଷ୍ଣ ନିଜ ହୃଦୟରେ ଲଗାଇ, ତା'ର ବହିଃଶୋଭା ବୃଦ୍ଧି ନିମିତ୍ତ ସେଥିରେ ଅଳତା ଲଗାଇଦେଉଛନ୍ତି । ଅଥବା ଶ୍ରୀକୃଷ୍ଣଙ୍କ ହୃଦୟରେ ସ୍ୱୟଂ ଲକ୍ଷ୍ମୀ ବିଜେ କରିଛନ୍ତି ଏବଂ ସେହି ହୃଦୟ କୌସ୍ତୁଭନାମକ ମଣିରେ ଅଳଙ୍କୃତ ହୋଇଛି ।

ଏପରି ଏକ ମହନୀୟ ହୃଦୟରେ ଛାର ଗୋପାଙ୍ଗନାର ପାଦକୁ ଲଗାଇ, ଶ୍ରୀକୃଷ୍ଣ ସେ ପାଦଯୁଗଳର ଶୋଭାବର୍ଦ୍ଧନ ନିମିତ୍ତ ଅଳତା ଲଗାଇଦେଉଛନ୍ତି ।

**ଘଟୟତି ସୁଘନେ କୁଚ୍‌ଯୁଗଗଗନେ ମୃଗମଦରୁଚିରୂଷିତେ,**
**ମଣିସରମମଳଂ ତାରକପଟଳଂ ପଦନଖଶଶିଭୂଷିତେ । (ଙ)**

ପଦ୍ୟ – କଠିନ କୁଚ ସଘନ ଉଚ୍ଚ ଲେପିଲା ମୃଗମଦ ।
କି ଏ ଗଗନମଣ୍ଡଳେ ଉଦେ ହୋଏ ନୀଳଜଳଦ ।।
ତଥି ଶୋଭନ ନଖର କ୍ଷତ ନବୀନ ଇନ୍ଦୁରାଜେ ।
ଅମଳମଣି ମୁକୁତାହାର ତାରାମଣ୍ଡଳ ସାଜେ ।।

ଗଦ୍ୟ – ସଖି, ସେହି ସୌଭାଗ୍ୟବତୀ କାମିନୀର ଉନ୍ନତ ସଘନ କୁଚ୍‌ଯୁଗଳରେ ରତିଶ୍ରମ ଅପନୋଦନ ପାଇଁ କସ୍ତୁରୀର ପ୍ରଲେପ ଦିଆଯାଇଛି । ସେହି ଆକାଶ ସଦୃଶ ବିଶାଳ ପୟୋଧର ଯୁଗଳରେ ନଖକ୍ଷତ ଅର୍ଦ୍ଧଚନ୍ଦ୍ର ପରି ଶୋଭାପାଉଛି । ଶ୍ରୀକୃଷ୍ଣ ସେ ରମଣୀକୁ ସୁରତକ୍ରୀଡ଼ାରେ ମୁଗ୍ଧ କରି, ତା'ର ଇଙ୍ଗିତରେ କୁଚ୍‌ଯୁଗଳ ଉପରେ ମୁକ୍ତାହାର ପିନ୍ଧାଇଦେଉଛନ୍ତି । ତାହା ଠିକ୍ ପ୍ରଶାନ୍ତ, ନୀଳ ତଥା ଅର୍ଦ୍ଧଚନ୍ଦ୍ର ଦ୍ୱାରା ପରିଶୋଭିତ ଗଗନରେ ତାରକାବଳୀ ସଦୃଶ ଶୋଭାପାଉଛି ।

**ଜିତବିସଶକଳେ ମୃଦୁଭୁଜଯୁଗଳେ କରତଳନଳିନୀଦଳେ ।**
**ମରକତବଳୟଂ ମଧୁକରନିଚ୍‌ୟଂ ବିତରତି ହିମଶୀତଳେ । (ଚ)**

ପଦ୍ୟ – ଜିଣି ମୃଣାଳମୃଦୁ କୋମଳ ବାହୁଯୁଗଳ କି ସେ ।
ନବୀନ ବିକଶିତ ସରୋଜ କରତଳ ଆଭାସେ ।।
ମର୍କତ ଚୁଡ଼ି ଭ୍ରମର ଧାଡ଼ି ପରାୟେ ଶୋଭା ରାଜେ ।
ହିମହୁଁ ଅତି ଶୀତଳ କରେ ହରଷେ ହରି ଖଞ୍ଜେ ।।

ଗଦ୍ୟ – ହେ ସଖି ! ମୃଣାଳଖଣ୍ଡ ସଦୃଶ କୋମଳ ତଥା ପଦ୍ମପତ୍ର ତୁଲ୍ୟ କରତଳଯୁକ୍ତ ସେହି ରମଣୀର ହିମପରି ଶୀତଳ କରଯୁଗଳରେ ଶ୍ରୀକୃଷ୍ଣ, ନାଡ଼ଯୁକ୍ତ ଓ ପତ୍ର ପରିଶୋଭିତ ପଦ୍ମ ଉପରେ ଭ୍ରମରମାଳା ଶୋଭା ପାଇଲା ପରି, ଇନ୍ଦ୍ରନୀଳମଣି ଖଚିତ ବଳୟ (ଚୂଡ଼ି) ପିନ୍ଧାଇଦେଉଛନ୍ତି ।

**ରମୟତି ସୁଭୃଶଂ କାମପି ସୁଦୃଶଂ ଖଳହଳଧରସୋଦରେ,**
**କିମଫଳମବସଂ ଚିରମିହ ବିରସଂ ବଦ ସଖି ! ବିଟପୋଦରେ । (ଛ)**

ପଦ୍ୟ – ନିଶ୍ଚୟ ଧ୍ୟାନ କରି ସମାନ ରମୁଛି ଯାକୁ ଘେନି ।
ଧନ୍ୟ କାମିନୀ ରମଣୀମଣି ମୋହିନୀ ସୁଲୋଚନୀ ।।

କହ ସଜନି ! ବଚନ ଘେନି ସାନୁଜ ହଳଧର ।
ବିଫଳେ କି କେ ବସିବି ଲତାଗହଳ ତରୁତଳ ।।

ଗଦ୍ୟ — ହେ ସଖି, ଖଳହଳଧରଙ୍କ ଭାଇ ଶ୍ରୀକୃଷ୍ଣ ସୌଭାଗ୍ୟବତୀ ସେହି କାମିନୀର ଅଙ୍ଗ ପ୍ରତ୍ୟଙ୍ଗରେ ଅଳଙ୍କାର ପିନ୍ଧାଇ ସାରିବା ପରେ ପୁଣି କାମାସକ୍ତ ହୋଇଉଠିଥିବେ । ତେଣୁ ସେ ସେହି ଗୋପାଙ୍ଗନା ସହିତ ପୁଣି ରତିକେଳିରେ ମାତିଥିବେ । ତେଣୁ ମୁଁ କାହିଁକି ବୃଥାଟାରେ ଏହି ବୃକ୍ଷପୂର୍ଣ୍ଣ ଭୟଙ୍କର ବନ ମଧ୍ୟରେ ଆଉ ଅଧିକ କାଳ ପ୍ରତୀକ୍ଷା କରି ରହିବି ?

(ଶ୍ରୀକୃଷ୍ଣ ଗୋଟିଏ ହଳିଆ ମୂର୍ଖର ଭାଇ ହୋଇଥିବାରୁ, ତା'ର ହିତାହିତ ଜ୍ଞାନ ନାହିଁ । ନୋହିଲେ ସେ ମୋ'ପରି ଗୋଟିଏ ରସବତୀ, ପୂର୍ଣ୍ଣଯୌବନା ଓ ଅନୁରାଗିଣୀ ରମଣୀକୁ ଛାଡ଼ି ଆଉ କେଉଁ କାମିନୀ ସହିତ ରତିକେଳିରେ ମାତିଥାଆନ୍ତା ? ତେଣୁ ମୁଁ ଆଉ କାହିଁକି ବୃକ୍ଷଗହଳ ଏହି ଲତାକୁଞ୍ଜରେ ବ୍ୟର୍ଥରେ ବସି ତାକୁ ପ୍ରତୀକ୍ଷା କରିବି ?)

**ଇହ ରସଭଣନେ କୃତହରିଗୁଣନେ ମଧୁରିପୁପଦସେବକେ**
**କଳିଯୁଗଚରିତଂ ନ ବସତୁ ଦୁରିତଂ କବିନୃପଜୟଦେବକେ । (ଜ)**

ପଦ୍ୟ — ସୁଜନମତି ଘେନି ଏ ନୀତି କବିଙ୍କ ନୃପବର ।
ମଧୁରିପୁର ପାଦ ହୃଦର ଭକତି ଭାବେ ଯାର ।।
ଶ୍ରୀଜୟଦେବ ହରିସେବକ ଶ୍ରୀକୃଷ୍ଣରସ କହି ।
କଳିଯୁଗର ପାତକ ଘୋର ଆଶ୍ରେ ନକଲେ ଯାଇ ।।

ଗଦ୍ୟ — ଶ୍ରୀରାଧାକୃଷ୍ଣଙ୍କ ରସଲୀଳା ବର୍ଣ୍ଣନରେ ଧୁରନ୍ଧର, ଶ୍ରୀହରିଙ୍କ ଗୁଣଗାନରେ ସୁରସିକ ଶ୍ରୀମଧୁସୂଦନ କୃଷ୍ଣଙ୍କ ପଦସେବକ କବିରାଜ ଜୟଦେବଙ୍କୁ ଏହି କଳିଯୁଗ ଚରିତ ଯେଉଁ ପାପସମୂହ ସ୍ପର୍ଶ ନକରୁ ।

**ନାୟାତଃ ସଖି ନିର୍ଦ୍ଦୟୋ ଯଦି ଶଠସ୍ତ୍ୱଂ ଦୂତି କିଂ ଦୂୟସେ**
**ସ୍ୱଚ୍ଛନ୍ଦଂ ବହୁବଲ୍ଲଭଃ ସ ରମତେ କିଂ ତତ୍ର ତେ ଦୂଷଣମ୍ ।**
**ପଶ୍ୟାଦ୍ୟ ପ୍ରିୟସଙ୍ଗମାୟ ଦୟିତସ୍ୟାକୃଷ୍ୟମାଣଂ ଗୁଣୈ-**
**ରୁତ୍କଣ୍ଠାର୍ତ୍ତିଭରାଦିବ ସ୍ଫୁଟଦିଦଂ ଚେତଃ ସ୍ୱୟଂ ଯାସ୍ୟତି । ୬ ।**

ପଦ୍ୟ — ନଇଲା ସଖି ! ଯେବେ ନିର୍ଦ୍ଦୟ ଶଠ ସେ ମଧୁହାରୀ ।
କି କେ ବିଅର୍ଥେ ଦୂଷଣ ତୋତେ ଦେବି ଗୋ ସହଚରି ।।
ସୁଖରେ ଅତି ପ୍ରୀତିବଶରେ ବହୁ ରମଣୀ ମେଳେ ।
କ୍ରୀଡ଼ଇ ଯେହୁ ନ ଆସେ ଯଦି କି ଦୋଷ ତେବେ ତୋରେ ।।
ତା' ଗୁଣ ଗୁଣି ରହିଛି ପୁଣି ଚିତ୍ତ ମୋ' ପ୍ରୀତିଭରେ ।
ବିଦାରି ହୃଦ ଯିବ ତା' ପାଶେ ଦେଖିବୁ ନୟନରେ ।।

ଗଦ୍ୟ – ହେ ସଖି ! ସେ ନିର୍ଦ୍ଦୟ ଶଠ ଶ୍ରୀକୃଷ୍ଣ ଯଦି କଣ୍ଠ ଦେଇ ଆସିଲେ ନାହିଁ; ଏଥିରେ ତୋର ଦୋଷ କେଉଁଠି ରହିଲା ? ଆଉ ମଧ ତୁ ଦୁଃଖ କରୁଛୁ କାହିଁକି ? ସେ ମନଇଚ୍ଛାରେ ବହୁରମଣୀଙ୍କ ମେଳରେ କ୍ରୀଡ଼ା କରୁଛନ୍ତି । ଏଥିରେ ମୁଁ ତୋତେ ଦୋଷ ଦେବି କାହିଁକି ? ମୁଁ ମୋର ପ୍ରାଣପ୍ରିୟ କାନ୍ତ ଶ୍ରୀକୃଷ୍ଣଙ୍କ ଗୁଣରେ ମୁଗ୍ଧହୋଇ ତାଙ୍କ ସହିତ ରତିକେଳି କରିବା ପାଇଁ ଅତ୍ୟନ୍ତ ଆକୁଳ ହେଉଛି । ମୋ' ହୃଦରେ ତାଙ୍କ ପ୍ରତି ଯେଉଁ ପ୍ରେମ, ତାହା ଉତ୍କଣ୍ଠାର ସହିତ ପ୍ରତୀକ୍ଷା କରି ରହିଛି । ତେଣୁ ତୁ ଆଜି ଦେଖିବୁ, ମୋ' ଚିତ୍ତ ଉତ୍କଣ୍ଠାରେ ଆକୁଳ ହୋଇ ନିଶ୍ଚୟ ତାଙ୍କ ନିକଟକୁ ସ୍ୱୟଂ ଚାଲିଯିବ । (ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ବିରହରେ ଆଜି ମୋର ମୃତ୍ୟୁ ସୁନିଶ୍ଚିତ ।)

*[ଦେଶବରାଡ଼ୀ ରାଗେଣ ଗୀୟତେ (ରୂପକ ତାଳେନ ଗୀୟତେ) (ଗୀତ–୪)]*

**ଅନିଳତରଳକୁବଳୟନୟନେନ ।**
**ତପତି ନ ସା କିଶଳୟଶୟନେନ ।**
**ସଖି ! ଯା ରମିତା ବନମାଳିନା ।। (ଧ୍ରୁବମ୍) (କ)**

ପଦ୍ୟ -- ଯେବଣ ବାଳୀ ବନମାଳୀରେ କରିଛି କେଳିରସ ।
ମଧୁପବନ ବହନ୍ତେ ଘନ ନ ପାଅଇ ସେ ତ୍ରାସ ।।
ନବପଲ୍ଲବ ଶେଯ ଉପରେ କୁବଳୟ ନୟନୀ ।
ନିଷ୍ପ୍ରାଣ ହୋଇ ନିଦ୍ରା ନ ଯାଇ ଥାଇ ନା ସୁବୋଧିନୀ ।।

ଗଦ୍ୟ – ପବନରେ ପ୍ରକମ୍ପିତ ନୀଳକମଳ ସଦୃଶ ଚଞ୍ଚଳ ନେତ୍ରଯୁଗଳ ଯାହାଙ୍କ ମୁଖମଣ୍ଡଳରେ ଶୋଭାପାଉଛି, ସେହି ବନମାଳାଧାରୀ ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ସୌଭାଗ୍ୟବତୀ ତରୁଣୀ କାମକେଳିରେ କାଳ ବିତାଇଛି; ସେ କେବେହେଲେ ନବପଲ୍ଲବ-ଶଯ୍ୟାରେ ଶୋଇ ବିରହତାପରେ ଦଗ୍ଧ ହେଉନାହିଁ । ଅଥବା – ପବନରେ ଆନ୍ଦୋଳିତ ନୀଳକମଳ ସଦୃଶ ଯାହାଙ୍କର ନେତ୍ରଯୁଗଳ ଅତ୍ୟନ୍ତ ଚଞ୍ଚଳ, ସେହି ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ନାରୀ ଥରେ ମାତ୍ର କାମକେଳିରେ ରସସିକ୍ତା ହୋଇଥିବ, ସେ ମୋ'ରି ପରି ତାଙ୍କ ବିରହରେ କୋମଳ ପତ୍ରଶଯ୍ୟାରେ କ'ଣ ବିରହତାପ ଅନୁଭବ କରୁନଥିବ ? ନିଶ୍ଚୟ ଅନୁଭବ କରୁଥିବ ।

**ବିକସିତସରସିଜଲଳିତମୁଖେନ ।**
**ସ୍ଫୁଟତି ନ ସା ମନସିଜବିଶିଖେନ ।। (ଖ)**

ପଦ୍ୟ – ନବବିକଚ ନଳୀନସଞ୍ଚ ଲାବଣ୍ୟଶୋଭା ମୁଖ ।
ଯେବଣ ବାମା ଲଭିଲା ସେହୁ କାହୁଁ ତାହାର ଦୁଃଖ ।।

ମନସିଜର କଠିନ ଶର ନ ଭେଦଇ ତା' ଅଙ୍ଗ ।
ରସଜଳଧି ଲଭିଲା ବାମା ହରିର ଅଙ୍ଗ ସଙ୍ଗ ।।

ଗଦ୍ୟ – ପ୍ରସ୍ଫୁଟିତ ପଦ୍ମଫୁଲ ପରି କାନ୍ତ ତଥା କୋମଳ ମୁଖ ଯାହାର, ଏପରି ଯେଉଁ ଶ୍ରୀକୃଷ୍ଣ, ତାଙ୍କ ସହିତ ରତିକେଳିରେ ମଜ୍ଜିଥିବା ସେହି ଗୋପକାମିନୀ, ସେ କ'ଣ ମୋ'ପରି କାମବାଣରେ ପୀଡ଼ିତା ହୋଇ ଦୁଃଖ ସହୁଥିବ ! ସେହି କାମିନୀ କାମସୁନ୍ଦରଙ୍କୁ ପାଇ ଆନନ୍ଦରେ ତାଙ୍କ ସହିତ ରତିକେଳିରେ ମାତିଥିବ !

**ଅମୃତମଧୁରମୃଦୁତରବଚନେନ ।**
**ଜ୍ୱଳତି ନ ସା ମଳୟଜରଚନେନ ।। (ଗ)**

ପଦ୍ୟ – ଅମୀୟ ମୃଦୁ ମଧୁରତର ବଚନ ପଦ୍ମପାଣି ।
ରମିଲା ଯେଉଁ ନାଗରୀନାରୀ ତରୁଣୀ ରତ୍ନମଣି ।।
ଚନ୍ଦନଘନ କଲେ ଲେପନ ନ ତାପଇ କା କାୟେ ।
କୃଷ୍ଣର କରକମଳ ଲାଗି ଶୀତଳ କାହିଁ ନୋହେ ।।

ଗଦ୍ୟ – ହେ ସଖି, ଅମୃତତୁଲ୍ୟ ମଧୁମୟ ତଥା କୋମଳ ବଚନ କହିବାରେ ଧୁରନ୍ଧର ସେହି ଶ୍ରୀକୃଷ୍ଣଙ୍କ କ୍ରୀଡ଼ାରସରେ ମାତି ସେହି ସୌଭାଗ୍ୟଶାଳିନୀ ଗୋପକାମିନୀ କ'ଣ ମୋ' ପରି ଶରୀରରେ ଚନ୍ଦନ ବିଲେପନ କରି ମଧ କାମପୀଡ଼ିତା ହୋଇ ଅଶେଷ କଷ୍ଟ ଅନୁଭବ କରୁଥିବ ? ସେ ପ୍ରାଣପ୍ରିୟଙ୍କ ଚନ୍ଦନଶୀତଳତର ଅଙ୍ଗ ସ୍ପର୍ଶକରି କାମବାଣକୁ ଭ୍ରୂକ୍ଷେପ କରୁନଥିବ ।

**ସ୍ଥଳଜଳରୁହରୁଚିକରଚରଣେନ ।**
**ଲୁଠତି ନ ସା ହିମକରକିରଣେନ ।। (ଘ)**

ପଦ୍ୟ – ଅମଳ ସ୍ଥଳକମଳ ଶୋଭା କରଚରଣ ଯା'ର ।
ସେ ହରି ଯାକୁ ରମଣ କରେ ଖେଦ ନାହିଁ ତାହାର ।।
ହିମକରର କିରଣେ ତନୁ ନ ଦହଇ ଯେ ତା'ର ।
ମୋହର ପ୍ରାୟେ ହୋଇଣ କାୟେ ନ ଲୁଠଇ ଭୂମିର ।।

ଗଦ୍ୟ– ସ୍ଥଳକମଳ ସଦୃଶ ଅତ୍ୟନ୍ତ ମନୋହର ତଥା କୋମଳ କର ଓ ପାଦ ଯାହାଙ୍କର, ସେହି ଶ୍ରୀକୃଷ୍ଣଙ୍କୁ ଅଙ୍ଗସଙ୍ଗୀ ରୂପେ ପାଇ କ୍ରୀଡ଼ାରସରେ ନିମଜ୍ଜିତା ସେହି ଭାଗ୍ୟବତୀ ରମଣୀମଣିକୁ, ମୋ'ପରି, ଚନ୍ଦ୍ରକିରଣ କେବେହେଲେ ପୀଡ଼ା ଦେଉନଥିବ ? ମନୋବାଞ୍ଛିତ ପ୍ରିୟଙ୍କୁ ପାଇବା ପରେ ଚଂଦ୍ରକିରଣ ତା' ପକ୍ଷରେ ସୁଖକର ତଥା ଆନନ୍ଦଦାୟକ ହୋଇଥିବ ।

**ସଜଳଜଳଦସମୁଦୟରୁଚିରେଣ ।**
**ଦଳତି ନ ସା ହୃଦି ଚିରବିରହେଣ ।। (ଙ)**

ପଦ୍ୟ– ସଜଳଜଳଧର ସୁନ୍ଦର ଯେବଣ ନରହରି ।
ତାହାକୁ ଘେନି ଯେଉଁ କାମିନୀ ରତିବିନୋଦ କରି ॥
ବିରହଭର ବାଧା ତାହାର ନାହିଁ ତ ଆନ କିଛି ।
ହୃଦୟ ଦଳି ଅତି ବିକଳି ନୁହଇଁ ତ ମୃଗାକ୍ଷୀ ॥

ଗଦ୍ୟ – ଜଳପୂର୍ଣ୍ଣ ନବୋଦିତ ଜଳଧର ସଦୃଶ ଶରୀରର କାନ୍ତି ଯାହାଙ୍କର, ଏମନ୍ତ ଯେଉଁ କନ୍ଦର୍ପ ତୁଲ୍ୟ ସୁନ୍ଦର ଶ୍ରୀକୃଷ୍ଣ, ତାଙ୍କ ସହିତ ଯେଉଁ ମନୋହାରିଣୀ ଗୋପକାମିନୀ କ୍ରୀଡ଼ା କରୁଛି, ସେ କ'ଣ କେବେହେଲେ ମୋ'ରି ପରି ବିରହରେ ଉଚ୍ଛନ୍ନ ହେଉଥିବ ? କାରଣ ନବଜଳଧରସୁନ୍ଦର ତନୁ ଶ୍ରୀକୃଷ୍ଣଙ୍କୁ ଶଯ୍ୟାସଙ୍ଗୀ କରିପାରିଲେ କା'ର ହୃଦୟ ବିରହପୀଡ଼ାରେ ବିଦଳିତ ହେବ କାହିଁକି ?

କମଳନିକଷରୁଚିଶୁଚିବସନେନ ।
ଶ୍ୱସିତି ନ ସା ପରିଜନହସନେନ ॥ (ଚ)

ପଦ୍ୟ – ତାହଦନକ ପ୍ରାୟକ ସଖି ! ବସନ କାନ୍ତି ଯା'ର ।
ସେ ମଧୁରିପୁ ରମେ ଯାହାକୁ ମହିମା ଅତି ତା'ର ॥
ସଖୀଜନଙ୍କ ଉପହାସରେ ତାପ ସେ ନ ପାଅଇ ।
ଶ୍ୱାସପବନ ଛେଡ଼ି ସଘନ ବିମନା ସେ ନ ହୋଇ ॥

ଗଦ୍ୟ– କଷଟି ପଥରରେ କଷାଯାଇଥିବା ସରସ ସୁବର୍ଣ୍ଣ ପରି ପରିମଳପୀତାମ୍ବରଧାରୀ ଶ୍ରୀକୃଷ୍ଣଙ୍କ ସହିତ କାମକେଳିରେ ମଗ୍ନ ସେହି ଗୋପତରୁଣୀକୁ ସଖୀମାନଙ୍କ ପରିହାସ ସହ୍ୟ କରିବାକୁ ପଡୁନଥିବ । ତାଙ୍କ ସହିତ ଚିରସୁଖରେ ବିଳାସ କରୁଥିବା ସେହି ତରୁଣୀର ସୌଭାଗ୍ୟକୁ ସଖୀଜନମାନେ ନିଶ୍ଚୟ ପ୍ରଶଂସା କରୁଥିବେ । ସେ କେବେହେଲେ ମୋ'ପରି ସଖୀମାନଙ୍କଦ୍ୱାରା ଉପହସିତା ହୋଇ ଦୀର୍ଘଶ୍ୱାସ ଛାଡୁନଥିବ ।

ସକଳଭୁବନଜନବରତରୁଣେନ ।
ବହତି ନ ସା ରୁଜମତିକରୁଣେନ ॥ (ଛ)

ପଦ୍ୟ – ସର୍ବଭୁବନେ ଯେତେକ ସଖି । ଯୁବା ପୁରୁଷମାନ ।
ସବୁରି ବର ସେ ବେଣୁଧର ସମାନ ନାହିଁ ଆନ ॥
ତାହାର ସଙ୍ଗ କ୍ରୀଡ଼ାର ରଙ୍ଗ କଲାକ ଯେଉଁ ନାରୀ ।
ନ ବହଇ ସେ ମନେ ବିମନା କାରୁଣ୍ୟଭରେ ବରି ॥

ଗଦ୍ୟ – ସକଳ ଭୁବନ ମଧ୍ୟରେ ସର୍ବଶ୍ରେଷ୍ଠ ଗୁଣବାନ୍ ତରୁଣ ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ସୌଭାଗ୍ୟବତୀ ଆଭୀର ଯୁବତୀ ବିହାର କରୁଛି, ସେ କାମପୀଡ଼ାରେ ପୀଡ଼ିତା ହୋଇ

କରୁଣଦଶା ଭୋଗୁଥିବ କାହିଁକି ? ମୁଁ ସେହି ତ୍ରିଭୁବନସୁନ୍ଦରଙ୍କ ବିରହରେ ସନ୍ତପ୍ତା ହୋଇ ଯେଉଁ ଦୁଃଖ ଭୋଗୁଛି, ସେ କେବେହେଲେ ସେପରି କଷ୍ଟ ପାଉନଥିବ ।

ଶ୍ରୀଜୟଦେବଭଣିତବଚ଼ନେନ ।
ପ୍ରବିଶତୁ ହରିରପି ହୃଦୟମନେନ ।। (ଜ)

ପଦ୍ୟ – ଜୟଦେବଙ୍କ ରଚିତ ଏହି ଶ୍ରୀହରିରସ ଗୀତ ।
ସୁଜନଜନ ହୃଦପଦ୍ମରେ ହରି ହୁଅନ୍ତୁ ସ୍ଥିତ ।।
ସୁଜନଜନ କର ଗାୟନ ପାତକ ନାଶ ଯାଉ ।
ରାଧାକୃଷ୍ଣଙ୍କ ଚରଣେ ଧ୍ୟାନ ଜନ୍ମଜନ୍ମାନ୍ତେ ରହୁ ।।

ଗଦ୍ୟ – କବିରାଜରାଜ ଶ୍ରୀଜୟଦେବଙ୍କ ରଚିତ ଏହି ବଚ଼ନ ସମୁଦାୟ ଶ୍ରବଣ, ପଠନ ଓ ମନନ କରିବା ଫଳରେ ଦୁଃଖହରଣକାରୀ ଶ୍ରୀକୃଷ୍ଣ ଭକ୍ତଜନମାନଙ୍କ ହୃଦୟରେ ପ୍ରବେଶକରନ୍ତୁ ।

ମନୋଭବାନନ୍ଦନଚନ୍ଦନାନିଳ ପ୍ରସୀଦରେ ଦକ୍ଷିଣ ମୁଞ୍ଚ ବାମତାମ୍ ।
କ୍ଷଣଂ ଜଗଦ୍‌ପ୍ରାଣ ବିଧାୟ ମାଧବଂ ପୁରୋ ମମ ପ୍ରାଣହରୋ ଭବିଷ୍ୟସି । ୭ ।

ପଦ୍ୟ – ଶୁଣ ଚନ୍ଦନ ପବନ ମୋର ଅତିବିନୟ ଘେନ ।
ମନସିଜର ଆନନ୍ଦକର ହୁଅସି ପରସନ୍ନ ।।
ଛାଡ଼ସି ବକ୍ରଭାବ ତୋହର ଚିତ୍ତେ ନ ଧର ଆନ ।
ଜଗତେ ଖ୍ୟାତ ଦକ୍ଷିଣବାତ ମୋ' ପାଇଁ କି କେ ବାମ ।।
କ୍ଷଣମାତ୍ରକେ ମୋର ଅଗ୍ରତେ ମାଧବ ବେଳେ ଆଣ ।
ପଛେ ତୋହର ଯେମନ୍ତ ଇଚ୍ଛା ଘେନସି ମୋର ପ୍ରାଣ ।।
ଜଗତଜୀବ-ଜୀବନ ତୁ ଯେ ସବୁରି ହୃଦେ ଥାଉ ।
ଏ ମୋର ଅତି ବିରହଗତି କୃଷ୍ଣେ କି କେ ନ କହୁ ।।

ଗଦ୍ୟ – ହେ ଜଗଦ୍‌ପ୍ରାଣ ଦକ୍ଷିଣ ପବନ, ତୁମେ କାମଦେବଙ୍କର ଆନନ୍ଦବର୍ଦ୍ଧନକାରୀ ରୂପେ ପ୍ରସିଦ୍ଧି ଅର୍ଜନ କରିଛ ଏବଂ ଚନ୍ଦନବନର ସଂସ୍ପର୍ଶରେ ଅତ୍ୟନ୍ତ ଶୀତଳ ହୋଇଛ । ମୋ'ପରି ଗୋଟିଏ ସାମାନ୍ୟ ଅବଳାଜନ ପ୍ରତି କୋପ ତ୍ୟାଗକରି ଦୟା ପ୍ରଦର୍ଶନ କର । ତୁମେ କ୍ଷଣକାଳ ପାଇଁ ପ୍ରାଣବଲ୍ଲଭ ମାଧବଙ୍କ ସହିତ ମୋର ମିଳନ କରାଇବା ପରେ, ମୋ' ପ୍ରାଣ ନେବାକୁ ଉଦ୍ୟତ ହେଲେ ସୁଦ୍ଧା ମୁଁ ତିଳେ ହେଲେ ଆପତ୍ତି କରିବିନାହିଁ । କାରଣ ମନୋବାଞ୍ଛିତ ଫଳ ପ୍ରାପ୍ତି ହେବା ପରେ ଏ ଜୀବନ ପ୍ରତି ମୋର ମୋହ ରହିବ ନାହିଁ । କିନ୍ତୁ ତା' ପୂର୍ବରୁ ତୁମେ ମୋ'ପ୍ରତି ଦୟା ପ୍ରଦର୍ଶନ କର ।

**ରିପୁରିବ ସଖୀସମ୍ବାସୋଽୟଂ ଶିଖୀବ ହିମାନିଲୋ ।**
**ବିଷମିବ ସୁଧାରଶ୍ମିର୍ଯସ୍ମିନ୍ ଦୂନୋତି ମନୋଗତେ ।**
**ହୃଦୟମଦୟେ ତସ୍ମିନ୍ନେବଂ ପୁନର୍ବଲତେ ବଳାଦ୍ ।**
**କୁବଳୟଦୃଶାଂ ବାମଃ କାମୋ ନିକାମନିରଙ୍କୁଶଃ ।। ୮ ।**

**ପଦ୍ୟ** – ଶୁଣ ସଜନି ! କହଇ ବାଣୀ ଏ ବନେ ମୋତେ ଆଣି ।
ଦେଲେ କଦନ ଦହେ ମଦନ ସେ ଶଠ ବେଣୁପାଣି ।।
ହିମଶିଶିର ବହନ୍ତେ ଧୀର ଅନଳ ଶିଖା ଜାଣି ।
ସୁଧାକିରଣ ଅତି ତୀକ୍ଷଣ ଗରଳ ପ୍ରାୟେ ମଣି ।।
ଅତି ଉନ୍ନତ ଏ ମନୋରଥ ନୁହଇଁ ନିବାରଣ ।
ଦୁର୍ନ୍ନୟ କରି ମନ ମୋହର ଦହୁ ଅଛଇ ପ୍ରାଣ ।।
ନିଷ୍ଠୁର ମତି ସେ ଗୋପୀପତି ନିର୍ଦ୍ଦୟ ହୃଦ ଯା'ର ।
ତା'ର ତହିଁକି ବଳେଟି ଚିତ୍ତ ନେଉଛି ଟାଣି ମୋର ।।
କାମିନୀଜନେ ଅତି କଦନେ ମାରଇ ନିତି ମାର ।
ତା' ପଞ୍ଚଶର ଅତି କଠୋର ସହିବ ବଳ କା'ର ।।

**ଗଦ୍ୟ** – ହେ ସଖି ! ଶ୍ରୀକୃଷ୍ଣଙ୍କ ବିରହରେ ମୋ' ପ୍ରାଣ କିପରି ଅଥୟ ତଥା ଅଧୀର ହେଉଛି ଶୁଣ । ଏ ସମୟରେ ପ୍ରିୟସଖୀମାନଙ୍କ ସହିତ ଆଳାପ ଆଲୋଚ଼ନା ଶତ୍ରୁତାପୂର୍ଣ୍ଣ କଥାବାର୍ତ୍ତା ପରି ମନେହେଉଛି । ମୃଦୁମନ୍ଦ ମଳୟପବନ ଅଗ୍ନି-କଣିକା ପରି ବୋଧହେଉଛି । ଅତ୍ୟନ୍ତ ଶୀତଳ ତଥା ସୁଖଦ ଚନ୍ଦ୍ରକିରଣ ବିଷଜ୍ୱାଳା ପରି ଲାଗୁଛି । ତା' ଫଳରେ ମୋ' ଶରୀର ବିରହତାପରେ ଦଗ୍ଧ ହେଉଛି । ଶ୍ରୀକୃଷ୍ଣଙ୍କ ବିରହରେ ମୋ' ଶରୀର ଏତେ ସରି ହେଲେ ମଧ ତାଙ୍କରି ସହିତ ମିଳିତ ହେବା ଲାଗି ମୋ' ମନ ବାରମ୍ବାର କାମନାକରୁଛି । ପ୍ରିୟତମ ଶ୍ରୀକୃଷ୍ଣଙ୍କର ଦୟାହୀନତା ସତ୍ତ୍ୱେ, ତାଙ୍କୁ ପାଇବା ପାଇଁ ମନ କୌଣସିମତେ ଆୟତ୍ତରେ ରହୁନାହିଁ । ଏଥିରୁ ମନେହେଉଛି – ନୀଳକଇଁ ସଦୃଶ ଚକ୍ଷୁ ଯାହାଙ୍କର, ଏପରି ଯେଉଁ କାମିନୀମାନେ ସେମାନଙ୍କ ପ୍ରତି କାମଦେବଙ୍କର ନିରଙ୍କୁଶ ପ୍ରଭାବ ତଥା ନିଦାରୁଣ ବ୍ୟବହାର ଚିରକାଳରୁ ଆଧିପତ୍ୟ ବିସ୍ତାର କରି ଆସୁଛି ।

**ବାଧାଂ ବିଧେହି ମଳୟାନିଳ ପଞ୍ଚବାଣ**
**ପ୍ରାଣାନ୍ ଗୃହାଣ ନ ଗୃହଂ ପୁନରାଶ୍ରୟିଷ୍ୟେ ।**
**କିଂ ତେ କୃତାନ୍ତଭଗିନି କ୍ଷମୟା ତରଂଗୈ-**
**ରଂଗାନି ସିଞ୍ଚ ମମ ଶାମ୍ୟତୁ ଦେହଦାହଃ ।। ୯ ।**

**ପଦ୍ୟ** – ପାଇଣ ପ୍ରାସ ମନେ ନିରାଶ ବୋଲେ ରମଣୀବର ।
ଶୁଣ ମଳୟ ସମୀର ! ମୋର ତନୁ ଦହନ କର ।।

ମୀନକେତନ ! ତୋ’ ପଞ୍ଚବାଣ ମାରି ଜୀବନ ନାଶ ।
ଯେମନ୍ତେ ମୋର ପୁଣ ଗମନ ନୁହଇ ନିଜ ବାସ ।।
କି କେ ଶମନଭଗ୍ନୀ କାଳିନ୍ଦୀ ଦୟା ତୋହର ଏତେ ।
ତରଳତର ସଞ୍ଚିଣ ନୀର ଶୀତଳ କର ମୋତେ ।।
ଗୋବିନ୍ଦ ବିନୁ ଏ ମୋର ତନୁ ଧରିବି ଆଉ କାହିଁ ।
ତାହାର ରତିକ୍ରୀଡ଼ା ବିଷରେ ଘାରୁଛି ମୋର ଦେହୀ ।।

× × × ×

ହରିଚରିତ ରସ ଅମୃତ ଶ୍ରବଣେ କର ପାନ ।
ହରିବ ଦୁଃଖ ଲଭିବ ସୁଖ ସଂଶୟ ନାହିଁ ଆନ ।।
ଶ୍ରୀକୃଷ୍ଣକ୍ରୀଡ଼ା ରସ ବିଶେଷ ଅମୃତମୟ ବାଣୀ ।
କହଇ ମୂଢ଼ ଧରଣୀଧର ରଖ ନଳିନପାଣି ।।

ଗଦ୍ୟ – ହେ ମଳୟ ପବନ ! ତୁମେ ମନଇଚ୍ଛା ଯେତେ ପାରୁଛ ମୋତେ ପୀଡ଼ାଦିଅ, ମୋର ଆଉ ତିଳେହେଲେ ଏ ପ୍ରାଣ ପ୍ରତି ମୋହ ନାହିଁ । ହେ କାମଦେବ ! ତୁମର ସମ୍ମୋହନ, ଉଚ୍ଚାଟନ, ଶୋଷଣ, ବିକ୍ଷୋଭଣ ଓ ଦହନ ନାମକ ପଞ୍ଚବାଣ ପ୍ରୟୋଗ କରି ମୋ’ ପ୍ରାଣ ବିନାଶ କର । ହେ କ୍ରୂର ଯମର ଭଉଣୀ ଯମୁନେ ! ତୁମେ ଆଉ ସ୍ଥିର ହୋଇ ରହିଛ କାହିଁକି ? ମୁଁ ଏ ପୋଡ଼ାପ୍ରାଣ ଘେନି ଆଉ ଗୃହକୁ ବାହୁଡ଼ି ଯିବାକୁ ଚାହେଁନାହିଁ । ତେଣୁ ହେ କୃତାନ୍ତ-ଭଗିନୀ ଯମୁନେ ! ତୁମେ ମଧ ତୁମର ଉତ୍ତାଳ ତରଙ୍ଗମାଳାରେ ମୋର ବିରହଦଗ୍ଧ ଶରୀରକୁ ନିମଜ୍ଜିତ କରାଇ ମୋତେ ଚିରଶାନ୍ତି ଦିଅ । ମୁଁ ଆଉ ମୋର ଦେହଦାହ ସହ୍ୟ କରିପାରୁନାହିଁ ।

**ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ବିପ୍ରଲବ୍ଧାବର୍ଣ୍ଣନେ ନାଗରନାରାୟଣୋ ନାମ ସପ୍ତମଃ ସର୍ଗଃ ।।** *

□□□

* ଅନ୍ୟାନ୍ୟ ସର୍ଗ ପରି ଏ ସର୍ଗର ଶେଷରେ ଗୋଟିଏ ସ୍ତୁତିମୂଳକ ଶ୍ଳୋକ ବିଭିନ୍ନ ପ୍ରକାଶନରେ ଥିଲେ ମଧ ଓଡ଼ିଶାର ପୋଥିମାନଙ୍କରେ ‘‘ପ୍ରାତର୍ନୀଳନିଚୋଳ . . . . ନନ୍ଦାମୁଜଃ’’ ଶ୍ଳୋକଟି ମିଳେ ନାହିଁ ।

# ଅଷ୍ଟମସର୍ଗ

ଅଥ କଥମପି ଯାମିନୀ ବିନୀୟ ସ୍ମରଶରଜର୍ଜ୍ଜରିତାପି ସା ପ୍ରଭାତେ ।
ଅନୁନୟବଚନଂ ବଦନ୍ତମଗ୍ରେ ପ୍ରଣତମପି ପ୍ରିୟମାହ ସାଭ୍ୟସୂୟମ୍ । ୧ ।

ପଦ୍ୟ – ଏଥୁ ଅନନ୍ତରେ ଶୁଣ ସାଧୁଜନେ ତାପ ପାଇ ମନେ ରାଧା ।
ଉଜାଗର ହୋଇ ପୁହାଇ ରଜନୀ କରିଛି ମଦନବାଧା ।।
ଅରୁଣ ଉଦୟେ ପ୍ରଭୁ ଦେବରାୟେ କାମଶରେ କ୍ଷୀଣ କାୟ ।
ରାଧା ଅଗ୍ରତେ ମିଳି କହେ ଅନନ୍ତ ନମ୍ରରେ ଅତି ବିନୟ ।।
ଗୋବିନ୍ଦଙ୍କୁ ଦେଖି ପୂର୍ଣ୍ଣଶଶିମୁଖୀ କୋପରେ ପୂରିତ ଦେହ ।
ନିରାଶବାଣୀ କହଇ ପୁଣ ପୁଣି ମୋର ସନ୍ନିଧିରୁ ଯାଅ ।।

ଗଦ୍ୟ – ଏହାପରେ ବିରହପୀଡ଼ିତା ରାଧା କୌଣସିମତେ ରାତ୍ରି ବିତାଇ ଏକାନ୍ତରେ ବସିଥିବାବେଳେ, ପ୍ରଭାତ ସମୟରେ ବିନୟପୂର୍ବକ ବଚନ ପ୍ରକାଶ କରି, ଶ୍ରୀକୃଷ୍ଣ ତାଙ୍କ ପାଦତଳେ ପଡ଼ି କଣ୍ଠଦେଇ ଆସିନଥିବାରୁ, କ୍ଷମାଭିକ୍ଷା କରିଥିଲେ । ଏହାଦେଖି ବିପ୍ରଲବ୍ଧା ନାୟିକା ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ଈର୍ଷାରେ ଜର୍ଜରିତା ହୋଇ ଧିକ୍କାରକଲେ ।

*[ ଭୈରବୀ ରାଗେଣ ଗୀୟତେ ( ଯତିତାଳାଭ୍ୟାଂ ଗୀୟତେ ) (ଗୀତ-୧) ]*

ରଜନୀଜନିତଗୁରୁଜାଗରରାଗକଷାୟିତମଳସନିମେଷମ୍
ବହତି ନୟନମନୁରାଗମିବ ସ୍ଫୁଟମୁଦିତରସାଭିନିବେଶମ୍ ।
ହରି ହରି, ଯାହି ମାଧବ ଯାହି କେଶବ ମା ବଦ କୈତବବାଦମ୍ ।
ତାମନୁସର ସରସୀରୁହଲୋଚନ ଯା ତବ ହରତି ବିଷାଦମ୍ । (କ) । ଧ୍ରୁବମ୍ ।

ପଦ୍ୟ – ଗୋବିନ୍ଦଙ୍କୁ ଦେଖି ପୂର୍ଣ୍ଣଶଶୀମୁଖୀ କୋପରେ ପୂରିତ ଦେହ ।
ନିରାଶ ବାଣୀ କହଇ ପୁଣ ପୁଣି ମୋର ସନ୍ନିଧିରୁ ଯାଅ ।।
ତୋର ଧୂର୍ତ୍ତପଣ ଯେତେକ ବଚନ ନକହ ପଦ୍ମଲୋଚନ ।
ଯେ ତୋ' କାମଖେଦ ହରିଲା ବିଷାଦ ତା' ପାଶେ କର ଗମନ ।।
ନିଦ୍ରା ଦୂରକରି ଯେବଣ ଚତୁରୀ ତୁଲେ ବଞ୍ଚିଲ ରଜନୀ ।
ତା'ର ପୀରତିରେ ଯେତେ ତୋର ମତି କହୁଛି ନୟନ ବେନି ।।
ଅମଳ କମଳ ଦଳ ଭୃଙ୍ଗ ରୋଳ ଅଳସେ କଷା ସଙ୍କାସ ।
ସଙ୍କୋଚ ନୟନେ ନିଦ୍ରା ସ୍ଫୁରେ ଘନ ବଦନ ଅତି ନୀରସ ।।

ଗଦ୍ୟ– ହେ ମାଧବ ! ତୁମେ ସାରାରାତି ଉଜାଗର ରହି କେଉଁ ନାୟିକା ସହିତ ରତିକେଳିରେ ମାତିଥିବାରୁ, ତୁମ ଆଖି ଯୋଡ଼ିକ ଲାଲ ଦେଖାଯାଉଛି । ଅଳସରେ ତୁମ ଆଖିପତା ଲଇଁପଡୁଛି । ତୁମ ଆଖିରୁ ସେହି ନାୟିକା ପ୍ରତି ପ୍ରକଟିଥିବା ଅନୁରାଗ ସ୍ପଷ୍ଟଭାବରେ ଝରିପଡୁଛି । ହାୟ ! ହାୟ ! ତୁମେ ଏ କ'ଣ କଲ ? ହେ ମାଧବ ! ହେ କେଶବ ! ତୁମେ ମୋ' ଆଖି ଆଗରୁ ଦୂରହୋଇଯାଅ ! ହେ ପଦ୍ମନେତ୍ର ଗୋପୀନାଥ ! ତୁମେ ଆଉ ମୋ' ଆଗରେ ମିଥ୍ୟାକଥା କହି ମୋତେ ଭୁଲାଇବାକୁ ଚେଷ୍ଟାକରନାହିଁ । କାଲି ରାତିରେ ଯେ ତୁମର ବିରହବେଦନା ରୂପକ ଦୁଃଖ ଦୂରକରିଥିଲା, ତୁମେ ତା'ରି ପାଖକୁ ଚାଲିଯାଅ !

ତୁମେ ମା-ଧବ ଅର୍ଥାତ୍ ଲକ୍ଷ୍ମୀପତି । ତୁମ ପରି ଗୋଟିଏ ପରପୁରୁଷ ପ୍ରତି ମନବଳାଇବା ମୋର ଭୁଲ ହୋଇଛି । ଅନ୍ୟ ନାୟିକାର ଅଙ୍ଗସଙ୍ଗ ଫଳରେ ଜଳରେ ପଚିସଢ଼ି (କେ-ଶବ) ଭାସୁଥିବା ଶବ ପରି ତୁମ ଦେହ ଦୁର୍ଗନ୍ଧରେ ପରିପୂର୍ଣ୍ଣ ହୋଇଛି । ତୁମେ ସଜଳଜଳଦ ପରି ଛଳଛଳ ଆଖିରେ ମିଥ୍ୟା କଥା କହି ମୋତେ ଭୁଲାଇଦେବାକୁ ଚେଷ୍ଟାକରନାହିଁ ।

**କଜ୍ଜଳମଳିନବିଲୋଚନଚୁମ୍ବନବିରଚିତନୀଳିମରୂପମ୍ ।**
**ଦଶନବସନମରୁଣଂ ତବ କୃଷ୍ଣ ତନୋତି ତନୋରନୁରୂପମ୍ । (ଖ)**

ପଦ୍ୟ – କେଳିରସ କାଳେ ତାକୁ ସ୍ନେହ ଭୋଳେ ଲୋଚନେ ଦେଲୁ ଚୁମ୍ବନ ।
ଏ ତୋର ସୁରଙ୍ଗ ଅଧର ବିରଙ୍ଗ କଜ୍ଜଳେ ଅତି ମଳିନ ।।
ଅରୁଣରୁ ଜ୍ୟୋତି ଅଧରର କାନ୍ତି ତବ ତନୁ ପ୍ରାୟ ଆଭା ।
ବିଧୁ ବିହୀନେ ଯେହ୍ନେ ନୀଳନଳିନ ପାଖୁଡ଼ାର ପ୍ରାୟ ଶୋଭା ।।

ଗଦ୍ୟ – ହେ ମାଧବ ! ତୁମର ଅରୁଣାୟିତ ଦଶନ, ପୀତ ବସନ ଓ ଅଧର ସବୁକିଛି ତୁମ ଶରୀରର କାନ୍ତି ପରି ଶ୍ୟାମ ବର୍ଣ୍ଣ ଦିଶୁଛି । କାରଣ, ସେହି ନାୟିକାର କଜ୍ଜଳ-ବିଲେପିତ ନେତ୍ରପ୍ରାନ୍ତରେ ତୁମେ ଗାଢ଼ ଚୁମ୍ବନ ଦେଇଥିବାରୁ, ତୁମ ଶରୀରର ନୀଳିମା ଅନ୍ୟତ୍ର ପ୍ରକଟ ହେଉଛି । ତୁମେ ଏ ରହସ୍ୟକୁ କୌଣସିମତେ ଲୁଚାଇ ପାରିବ ନାହିଁ ।

**ବପୁରନୁବହତି ତବ ସ୍ମରସଙ୍ଗରଖରନଖରକ୍ଷତରେଖମ୍**
**ମରକତଶକଲକଳିତକଳଧୌତଲିପେରିବ ରତିଜୟଲେଖମ୍ । (ଗ)**

ପଦ୍ୟ – ତା'ର କରରୁହ କ୍ଷତେ ତୋ'ର ଦେହ ଯେମନ୍ତ ଦିଶଇ ପୁଣ ।
ଜମ୍ବୁନଦ ରେଖା ଲେଖିଥିଲେ ଶିକ୍ଷା ଜାଣି ମର୍କତ ପାଷାଣ ।।
ମଦନ ସମରେ ଗାଢ଼ ସୁରତରେ ଜିଣିଲା ତୋତେ ଅବଳା ।
ଜୟ କରି ପତ୍ର ଲେଖିଛି ଚତୁରୀ ଜାଣଇ ବିବିଧ କଳା ।।

ଗଦ୍ୟ – ହେ ମାଧବ, ସେ ନାୟିକା ସହିତ ତୁମେ ରତିକେଳି ରୂପକ ଯୁଦ୍ଧରେ ମାତିଥିବା ସମୟରେ, ସେହି ରମଣୀର ତୀକ୍ଷ୍ଣନଖକ୍ଷତ ତୁମ ଶରୀରରେ ପରିସ୍ଫୁଟ ହୋଇ ଦିଶିଯାଉଛି । ମନେହୁଏ, ସତେ ଯେପରି, ସେ କାମିନୀ ରତିରଣରେ ତୁମକୁ ଜୟକରି ମରକତଶିଳାତୁଲ୍ୟ ତୁମ ଶରୀରରେ ସୁବର୍ଣ୍ଣ ଅକ୍ଷରରେ ତା'ର ବିଜୟ ପ୍ରଶସ୍ତି ରଚନା କରିଛି । ଅର୍ଥାତ୍ ତୁମେ ସେହି କାମିନୀ ସହିତ ଗାଢ଼ ସୁରତରେ ମାତିଥିବାରୁ, ତା'ର ନଖଦ୍ୱାରା ତୁମ ଶରୀର କ୍ଷତବିକ୍ଷତ ହୋଇଛି ।

**ଚରଣ-କମଳଗଳଦଲକ୍ତକସିକ୍ତମିଦଂ ତବ ହୃଦୟମୁଦାରମ୍ ।**
**ଦର୍ଶୟତୀବ ବହିର୍ମଦନଦ୍ରୁମନବକିଶଳୟପରିବାରମ୍ ।। (ଘ)**

ପଦ୍ୟ – କହୁଅଛି ଶୁଣ ପୁଣ ମୋର ବାଣୀ ତାହାକୁ ତୋ' ସ୍ନେହ ଅତି ।
କ୍ରୀଡ଼ାରସ କାଳେ ନ ହେଜିଲୁ ତାଳେ ହୋଇଲୁ ତୁ ଭୋଳମତି ।।
ତାହାର ଚରଣ ଘେନି ହୃଦୟେଣ ଧଇଲୁ ତୋହର ଆଣି ।
ଅଳତାରଙ୍ଗ ଦିଶଇ ଯେହ୍ନେ ଅଙ୍ଗ ଶୁଣ କହି ବେଣୁପାଣି ।।
ହୃଦୟ ଭିତର କାମ ତରୁବର ନବପଲ୍ଲବିତ ହୋଇ ।
ତେମନ୍ତ ପ୍ରକାର ଦିଶଇ ଶରୀର ଅଲକ୍ତକ ଶୋଭା ବହି ।।

ଗଦ୍ୟ – ହେ ମାଧବ ! ସେହି କାମିନୀର ଅଳତାବୋଳା ପାଦର ଚିହ୍ନ ତୁମ ହୃଦୟରେ ସ୍ପଷ୍ଟରୂପେ ଅଙ୍କିତ ହୋଇଛି । କାରଣ କାମଶାସ୍ତ୍ର-ପଣ୍ଡିତ ହୋଇଥିବାରୁ , ତୁମେ ସେହି କାମିନୀର ପାଦଦ୍ୱୟକୁ ହୃଦୟରେ ଲଗାଇ ଗାଢ଼ ସୁରତ ଅର୍ଥାତ୍ ବନ୍ଧ ରଚନାପୂର୍ବକ କାମକେଳିରେ ମଗ୍ନ ଥିଲ । ତେଣୁ ତା' ପାଦର ଅଳତା ଚିହ୍ନ ତୁମ ବକ୍ଷଦେଶରେ ଅଙ୍କିତ ହୋଇଛି । ହେ ଶଠ ! ତୁମ ହୃଦୟରେ ଅଙ୍କିତ ହୋଇଥିବା ସେହି ଅଳତାର ଚିହ୍ନକୁ ଦେଖିଲେ ମନେହୁଏ, ସତେ ଯେପରି କାମବୃକ୍ଷ ସ୍ୱରୂପ ତୁମ ହୃଦୟ ଦେଶରେ ନବପଲ୍ଲବ ସଦୃଶ ସେହି ଅଳତାବୋଳା ପାଦଚିହ୍ନ ଶୋଭାପାଉଛି ।

**ଦଶନପଦଂ ଭବଦଧରଗତଂ ମମ ଜନୟତି ଚେତସି ଖେଦମ୍ ।**
**କଥୟତି କଥମଧୁନାପି ମୟା ସହ ତବ ବପୁରେତଦଭେଦମ୍ । (ଙ)**

ପଦ୍ୟ – ଏ ତୋ'ର ଅଧରେ ଦଶନେ ଦଶନଘାତ ଦେଇଅଛି ରାମା ।
ଦେଖିଣ ବିଷାଦ ମନେ ମୋର ଦେଖ ଧନ୍ୟ ସେ ରାମା ମହିମା ।।
କହିଲେ ଯେତେକ କଥା ଏକୁଁ ଏକ ଲୁଚାଇବୁ ଅବା କାହିଁ ।
ମୋହରେ ତୋହର ଅଭେଦ ପୀରତି ଧୂର୍ତ୍ତପଣ କାହିଁପାଇଁ ।।

ଗଦ୍ୟ – ହେ ମାଧବ ! ଗାଢ଼ ପୀରତି ବେଳେ ସେହି ମନୋରମା କାମିନୀ ତୁମ ଅଧରରେ ଦନ୍ତକ୍ଷତ କରିଛି । ତାହା ଦେଖିବାମାତ୍ରେ ମୋ' ହୃଦୟରେ ଅଶେଷ ଦୁଃଖ

ଜାତହେଉଛି । ତୁମ ଅଧରରେ ଅନ୍ୟ ରମଣୀର ଦନ୍ତକ୍ଷତ ଦେଖିବା ପରେ ମଧ ଆମ ଦୁହିଙ୍କ ମଧ୍ୟରେ ଅଭେଦପ୍ରୀତି ରହିଛି ବୋଲି ତୁମେ ସାହସର ସହିତ କହିପାରୁଛ !

ବହିରିବ ମଳିନତରଂ ତବ କୃଷ୍ଣ ! ମନୋଽପି ଭବିଷ୍ୟତି ନୂନମ୍ ।
କଥମଥ ବଞ୍ଚୟସେ ଜନମନୁଗତମସମଶରଜ୍ୱରଦୂନମ୍ ।। (ଚ)

ପଦ୍ୟ – ବାହାର ଭିତରେ ଶୁଦ୍ଧ ନାହିଁ ତୋର କଥାରେ ନ ଭଣ୍ଡ ହରି ।
ନକର ଚାଟୂକ୍ତି ଯାଅ ଶିରୀପତି ଯହିଁ ଅଛି ସେ ନାଗରୀ ।।
ନିତ୍ୟେ ହେଁ ମକରଧ୍ୱଜରାୟଶର ତନୁରେ ପଡ଼ି ମୋହର ।
ବହୁ ଦୁର୍ନ୍ନୟ କରି ଦେହ ଦହଇ କହିବି କାହା ଆଗର ।।

ଗଦ୍ୟ – ହେ ମାଧବ ! ତୁମର ଏ ପ୍ରକାର ଆଚରଣ ଦେଖି ମୋର ମନେହେଉଛି, ବାହାରେ ତୁମର ଶରୀର ଯେପରି ନୀଳିମାମୟ, ଅନ୍ତର ମଧ ଅନୁରୂପ କାଳିମାମୟ ହୋଇଛି । ନୋହିଲେ ସଦାସର୍ବଦା ତୁମରି ଚିନ୍ତାରେ କାଳଯାପୁଥିବା ଏହି ଅନୁଗତ ପ୍ରଣୟିନୀକୁ ତୁମେ ଠକିଦେଇ, କନ୍ଦର୍ପର ପଞ୍ଚବାଣରେ ପୀଡ଼ିତ କରିନଥା'ନ୍ତ । ତୁମରି ବିରହରେ ମୁଁ କାମଜ୍ୱରରେ ଆକ୍ରାନ୍ତ ହୋଇ ଅତ୍ୟନ୍ତ କଷ୍ଟ ଭୋଗ କରୁଛି ।

ଭ୍ରମତି ଭବାନବଳାକବଳାୟ ବନେଷୁ କିମତ୍ର ବିଚିତ୍ରମ୍।
ପ୍ରଥୟତି ପୂତନିକୈବ ବଧୂବଧନିର୍ଦ୍ଦୟବାଳଚରିତ୍ରମ୍ ।। (ଛ)

ପଦ୍ୟ – ଅବଳା କାମିନୀ ହୋଇ ଏକାକିନୀ ବନେ ବନେ ଭ୍ରମୁଥାଇ ।
ରଜନୀ-ଦିବସ ନ ଜାଣଇ ଶେଷ ମରଇ ତୋହରି ପାଇଁ ।।
ଏ ତୋ'ର ହୃଦୟ ନିଷ୍ଠୁର କଠୋର ଭଲେ ଜାଣଇଁ ମୁଁ କିନା ।
ବାଳକାଳେ ସ୍ତନ୍ୟ ପାନ କରି ହେଲେ ନାଶିଥିଲୁ ତୁ ପୂତନା ।।
ସ୍ତିରୀ ହତ୍ୟା କଲୁ କିଛି ନ ମଣିଲୁ ତୋତେ ନ ଲାଗିଲା ସେହି ।
ମୋତେ ଅରଣ୍ୟ ଭିତରେ ବୁଲାଇବା ଏ କି ବିଚିତ୍ର ଅଟଇ ।।

ଗଦ୍ୟ – ହେ ମାଧବ ! ତୁମେ ଅବଳାବଧୂଜନମାନଙ୍କୁ ନିର୍ଦ୍ଦୟ ଭାବରେ ବଧପୂର୍ବକ ଗ୍ରାସ କରିବା ପାଇଁ ଏହି ବୃନ୍ଦାବନରେ ଭ୍ରମଣ କରୁଛ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ, ବାଳକ କାଳରୁ ତୁମେ ମହାବଳୀୟସୀ କଂସାସୁରର ଆତ୍ମୀୟା ପୂତନାକୁ ବଧ କରିଛ । ତେଣୁ ବଧୂବଧ ବିଷୟରେ ତୁମର ନିର୍ଦ୍ଦୟତା ସେହି କାଳରୁ ଜଗତରେ ବ୍ୟାପିଯାଇଛି । ତେଣୁ ମୋ' ପରି ଗୋଟିଏ ବିରହପୀଡ଼ିତା ଅବଳାକୁ ବଧ କରିବା ତୁମ ପକ୍ଷରେ ଆଦୌ ଆଶ୍ଚର୍ଯ୍ୟର ବିଷୟ ନୁହେଁ ।

ଶ୍ରୀଜୟଦେବଭଣିତରତିବଞ୍ଚିତଖଣ୍ଡିତଯୁବତିବିଳାପମ୍ ।
ଶୃଣୁତ ସୁଧାମଧୁରଂ ବିବୁଧା ବିବୁଧାଳୟତୋଽପି ଦୁରାପମ୍ । (ଜ)

ପଦ୍ୟ – ସଙ୍କେତ ସ୍ଥାନେ ହରି-କ୍ରୀଡ଼ା ନ ପାଇ ରତି ବିଳାପେ ଖଣ୍ଡିତା ।
ବିବିଧ ଦୁର୍ଲ୍ଲଭ ଅମୃତ ସୁଲଭ ଜୟଦେବରେ ବର୍ଣ୍ଣିତା ।।
ସେ ଅମୃତମୟ ବାଣୀ ଶୁଣି ଜନେ ଆପଣେ ହୁଅ ତୃପତ ।
ସ୍ୱର୍ଗଲାଭଠାରୁ ଅଧିକ କଠିନ କବିଜୟଦେବ ଗୀତ ।।

ଗଦ୍ୟ – ହେ ଭକ୍ତଜନମାନେ ! କବିରାଜ ଜୟଦେବଙ୍କ ବର୍ଣ୍ଣିତ ସମ୍ଭୋଗଶୃଙ୍ଗାରରୁ ବଞ୍ଚିତା ଖଣ୍ଡିତା (ଅନ୍ୟ ନାୟିକାକୁ ଉପଭୋଗ କରି ଆସିଥିବା ନିଜ ପ୍ରଣୟୀକୁ ଦେଖି କୋପ ପ୍ରକାଶ କରୁଥିବା ରମଣୀ ଖଣ୍ଡିତା ରୂପେ କଥିତ ।) ରମଣୀର ସୁଧାଠାରୁ ଅଧିକ ମଧୁର ତଥା ରସମୟ ବିଳାପକୁ ଶୁଣ । ହୁଏତ ସ୍ୱର୍ଗଲାଭ କରିବା ସହଜ ହୋଇପାରେ, କିନ୍ତୁ ରସିକ ଭକ୍ତକବି ଜୟଦେବଙ୍କ ବିରଚିତ ରସରାଜ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ଚରିତ; ବିଶେଷତଃ ବିରହିଣୀ ରାଧିକାଙ୍କର ବିଳାପ ବର୍ଣ୍ଣିତ ଗୀତ ଶୁଣିବା ସହଜ ନୁହେଁ ।

**ତବେଦଂ ପଶ୍ୟନ୍ତ୍ୟାଃ ପ୍ରସରଦନୁରାଗଂ ବହିରିବ**
**ପ୍ରିୟାପାଦାଲକ୍ତଚ୍ଛୁରିତମରୁଣଚ୍ଛାୟହୃଦୟମ୍ ।**
**ମମାଦ୍ୟ ପ୍ରଖ୍ୟାତପ୍ରଣୟଭରଭଙ୍ଗେନ କିତବ !**
**ତ୍ୱଦାଲୋକଃ ଶୋକାଦପି କିମପି ଲଜ୍ଜାଂ ଜନୟତି । ୨ ।**

ପଦ୍ୟ – ପୁନରପି ଶୁଣ ମୋହର ବଚନ ପ୍ରିୟାକୁ ତୋ' ଅନୁରାଗ ।
ଅଳତାର ଶୋଭା ଅରୁଣର ପ୍ରଭା ବହିଛୁ ହୃଦୟଭାଗ ।।
ତା'ର ସ୍ନେହଭର ଆଗରେ ମୋହର ଦେଖାଉଅଛୁ ମୁରାରି ।
ଶୋକତାପ ବିନୁ ଲଜ୍ଜା ଦହେ ତନୁ ଚତୁର ଅଟୁ ଶ୍ରୀହରି ।।

× × × ×

ନୀଳେନ୍ଦୀବରଲୋଚନ କଳେବର ନୀଳଜଳଧର ଆଭା ।
ଧରଣୀଧର ଧୀରମତି ଚାତକ ତୃଷିତ ମୁକୁନ୍ଦ ସେବା ।।

ଗଦ୍ୟ – ହେ ଶଠ ! ତୁମକୁ ଦେଖିବା ପରେ ମୋ' ହୃଦୟ ଶୋକାକ୍ରାନ୍ତ ହେବା ବ୍ୟତିରେକେ ଲଜ୍ଜାରେ ଅଭିଭୂତ ହୋଇଉଠିଛି । କାରଣ ତୁମେ ମୋତେ ତ୍ୟାଗକରି କୌଣସି ଗୋଟିଏ କାମିନୀ ସହିତ ରତିରଙ୍ଗରେ ମାତି, ତା' ପାଦର ଅଳତା ଚିହ୍ନକୁ ହୃଦୟରେ ଧାରଣକରିଛ । ଯେଉଁ ରାଧିକା ତୁମର ପ୍ରଣୟିନୀ ବୋଲି ପ୍ରଖ୍ୟାତ ହୋଇଥିଲା, ତା'ର ସେହି ପ୍ରଣୟବିଶ୍ୱାସ ଭଙ୍ଗ ହୋଇଛି । ତୁମ ବକ୍ଷରେ ଅନ୍ୟ ରମଣୀର ଅଳତାବୋଳା ପାଦଚିହ୍ନ ଦେଖି, ମୁଁ ଆଉ ଶୋକ କରିବି କ'ଣ, ଲଜ୍ଜାରେ ମୋର ଶିର ଲଇଁଯାଉଛି ।

ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ ଖଣ୍ଡିତା
ବର୍ଣ୍ଣନେ ବିଲକ୍ଷଲକ୍ଷ୍ମୀପତିର୍ନାମ ଅଷ୍ଟମଃ ସର୍ଗଃ ।

□□□

# ନବମସର୍ଗ

ତାମଥ ମନ୍ମଥଖିନ୍ନାଂ ରତିରସଭିନ୍ନାଂ ବିଷାଦସମ୍ପନ୍ନାମ୍ ।
ଅନୁଚିନ୍ତିତହରିଚ଼ରିତାଂ କଲହାନ୍ତରିତାମୁବାଚ଼ ରହଃ ସଖୀ । ୧ ।

ପଦ୍ୟ – ଏଥୁ ଅନନ୍ତରେ କଥା । ରାଧିକାର ମନେ ବ୍ୟଥା ।।
କୁସୁମଶରରେ କ୍ଷୀଣା । ରତିରସ ବିନୁ ଦୀନା ।।
ବିଷାଦିତ ହୋଇ ବସି । ହରି କଥା ମନେ ଘୋଷି ।।
କୃଷ୍ଣରେ କଳହ କରି । ଝରାଏ ନୟନୁ ବାରି ।।
ଏସନ ଦେଖି ସଜନୀ । କହଇ ମଧୁର ବାଣୀ ।।

ଗଦ୍ୟ – ଶ୍ରୀକୃଷ୍ଣ ନିରାଶ ହୋଇ କୁଞ୍ଜକୁଟୀରରୁ ଫେରିଯିବା ପରେ, ରତିସୁଖବଞ୍ଚିତା, ମଦନବାଣରେ ପୀଡ଼ିତା, ଦୁଃଖିତହୃଦୟା, ବିଷଣ୍ଣମାନସା, ଅନବରତ ଶ୍ରୀକୃଷ୍ଣଙ୍କ ଚରିତ ଚିନ୍ତନପରା ଏବଂ ଭର୍ତ୍ସନା କରି ଶ୍ରୀକୃଷ୍ଣଙ୍କୁ ବିଦାୟ କରିଦେଇ ପୁଣି ତାଙ୍କ ବିଷୟ ଚିନ୍ତାକରି ବିଳାପକରୁଥିବା କଳହାନ୍ତରିତା ଶ୍ରୀରାଧାଙ୍କୁ ପ୍ରିୟସଖୀ ଏକାନ୍ତରେ ବୁଝାଇ କହିଲା ।

*[ ଗୁର୍ଜ୍ଜରୀ ରାଗେଣ ଗୀୟତେ (ଯତିତାଳାଭ୍ୟାଂ ଗୀୟତେ) । (ଗୀତ – ୧) ]*

ହରିରଭିସରତି ବହତି ମୃଦୁପବନେ ।
କିମପରମଧିକସୁଖଂ ସଖି ଭବନେ ।
ମାଧବେ, ମା କୁରୁ ମାନିନି ମାନମୟେ ।। (କ) । ଧ୍ରୁବମ୍ ।

ପଦ୍ୟ – ଶୁଣ ସଖି ! ବାଣୀ ମୋର । ମାଧବେ ମାନ ନ କର ।।
ଦେଖ ଏ ବସନ୍ତକାଳ । ବହଇ ମଳୟାନିଳ ।।
ଏସନ ସମୟେ ହରି । ଅଇଲା ତୋ' ଅନୁସରି ।।
ଏଥୁଁ କିସ ଫଳ ଦେଖି । ଲଭିବୁ ଯେ ସୁଖ ସଖି ।।

ଗଦ୍ୟ – ଆଗୋ ମାନବତୀ ରାଧିକେ ! ବସନ୍ତକାଳୀନ ମୃଦୁମନ୍ଦ ପବନ ବହି ହୃଦୟରେ କାମଭାବ ଉଦ୍ରେକ କରାଉଛି । ଏହି ସମୟରେ ଶ୍ରୀକୃଷ୍ଣ କୁଞ୍ଜକୁ ଅଭିସାର କରିଛନ୍ତି । ତାଙ୍କୁ ଭର୍ତ୍ସନାକରି ଫେରାଇଦେଇ ତୁ ଯଦି ଘରକୁ ଯିବୁ , କି ଅଧିକ ସୁଖ ପାଇବୁ ? ବରଂ ତାଙ୍କରି ରୂପ ଗୁଣ ଓ ପ୍ରଣୟ ଚିନ୍ତାକରି ଅଧିକ ଦୁଃଖପାଇବୁ । ତେଣୁ ମୁଁ କହୁଛି –

ଆଗୋ ମାନମୟୀ ରାଧେ ! ଶ୍ରୀକୃଷ୍ଣଙ୍କ ପ୍ରତି ଅଭିମାନିନୀ ହୁଅନାହିଁ । ଏହା ଫଳରେ ତୁ ଅଧିକ ଦୁଃଖ ଭୋଗକରିବୁ ।

ତାଳଫଳାଦପି ଗୁରୁମତିସରସମ୍ ।
କିଂ ବିଫଳୀକୁରୁଷେ କୁଚ଼କଲସମ୍ ।। (ଖ)

ପଦ୍ୟ – ଏ ତୋର କୁଚ଼ଯୁଗଳ । ସରସ କି ତାଳଫଳ ।।
ଏହାକୁ ବିଫଳ କରୁ । କୃଷ୍ଣଙ୍କୁ ଅନ୍ତରେ ଧରୁ ।।

ଗଦ୍ୟ – ହେ ରାଧେ, ତୁମେ ଶ୍ରୀକୃଷ୍ଣଙ୍କ ପ୍ରତି ଅଭିମାନିନୀ ହୋଇ ତାଳଫଳଠାରୁ ଉନ୍ନତ, ସରସ ଓ କଠିନ ତୁମର କୁଚ଼ଦ୍ୱୟର ସାର୍ଥକତାକୁ ବିଫଳ କରୁଛ କାହିଁକି ? କାରଣ ପ୍ରଣୟୀର କରସ୍ପର୍ଶରେ ତୁମର ଏହି ଉନ୍ନତ ପୟୋଧର ଯୁଗଳ ସାର୍ଥକ ହେବ । ନିଜେ ଜାଣିଶୁଣି ତାହାକୁ ଏଡ଼ାଇ ଦେଉଛ କାହିଁକି ?

କତି ନ କଥିତମିଦମନୁପଦମଚିରମ୍ ।
ମା ପରିହର ହରିମତିଶୟରୁଚିରମ୍ ।। (ଗ)

ପଦ୍ୟ – ହରି କଥା କହେଁ ଯେତେ । ନ ଘେନୁ ହୃଦୟଗତେ ।।
ଗୋବିନ୍ଦେ ନ ଛାଡ଼ ମିତ । ତ୍ରିପୁର ସୁନ୍ଦର କାନ୍ତ ।।

ଗଦ୍ୟ – ହେ ରାଧିକେ, ମୁଁ ତୁମକୁ ଶ୍ରୀକୃଷ୍ଣଙ୍କ ମଧୁମୟ ଗୁଣ, ମନୋହର ରୂପ ତଥା କାନ୍ତ ପ୍ରଣୟୀ ବୋଲି ବହୁବାର ଏବଂ ବହୁ କ୍ଷେତ୍ରରେ କହିଛି । ତା' ବ୍ୟତୀତ ସାମାନ୍ୟ କଥାରେ ଅଭିମାନ କରି, ତାଙ୍କୁ ତ୍ୟାଗ ନ କରିବାକୁ ବୁଝାଇଛି । ସେ ଅତିଶୟ ସୁନ୍ଦର ଓ ତୋ'ର ହୃଦୟବଲ୍ଲଭ ଅଟନ୍ତି । ତାଙ୍କୁ ପରିତ୍ୟାଗ କରିବା ତୋ' ପକ୍ଷରେ ଉଚିତ ନୁହେଁ ।

କିମିତି ବିଷୀଦସି ରୋଦିସି ବିକଳା ।
ବହସତି ଯୁବତିସଭା ତବ ସକଳା ।। (ଘ)

ପଦ୍ୟ – ବିଷାଦ କାହିଁକି ମନ, ବିକଳେ କରୁ ରୋଦନ ।।
ତୋହର ଏ ଭାବ ଦେଖି, ହସିବେ ସକଳ ସଖୀ ।।

ଗଦ୍ୟ – ହେ ସଖି । ଯଦି ଶ୍ରୀକୃଷ୍ଣଙ୍କ ପ୍ରତି ତୋ' ମନରେ ଏତେ ବିତୃଷ୍ଣା ଜାତହୋଇଛି, ତୁ ତେବେ ଦୁଃଖ କରୁଛୁ କାହିଁକି ? ଶ୍ରୀକୃଷ୍ଣଙ୍କୁ ହରାଇ ଏପରି ବିକଳ ହୋଇ ରୋଦନ କରୁଛୁ କାହିଁକି ? ଆଗୋ ରାଧିକେ ! ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କୁ ଭର୍ତ୍ସନା କରି ଏବଂ ତାଙ୍କ ପ୍ରତି ଅଭିମାନିନୀ ହୋଇ, ଏପରି ଭାବରେ ରୋଦନ କଲେ, ସାଙ୍ଗସାଥୀ ସଖୀ ଓ ପରିଜନମାନେ ତୋ' ଅଦ୍‌ଭୁତ ଆଚ଼ରଣ ଦେଖି ଉପହାସ କରିବେ । ତେଣୁ ମୋ' କଥା ମାନି ଏ ଅଭିମାନ ତ୍ୟାଗକର ।

**ସଜଳନଳିନଦଳଶୀତଳଶୟନେ ।**
**ହରିମବଲୋକୟ ସଫଳୟ ନୟନେ । (ଙ)**

**ପଦ୍ୟ –** ସଜଳନଳିନୀଦଳ । ସୁସଜ୍ଜ ଶଯ୍ୟା ଶୀତଳ ॥
ତହିଁରେ ଦେଖ ହରିଙ୍କି । ସଫଳ ହେଉ ତୋ ଆଖି ॥

**ଗଦ୍ୟ –** ହେ ରାଧେ ! ଶ୍ରୀକୃଷ୍ଣଙ୍କ ବିରହରେ ତୁ କାମାନଳରେ ଦଗ୍ଧ ହୋଇ ସଦ୍ୟ ଜଳରୁ ଆଣି କୋମଳ ନଳିନୀଦଳରେ ଶୟନ କରିଛୁ । ଅତଏବ ଶ୍ରୀକୃଷ୍ଣଙ୍କ ବିରହରେ ତୁ ଅତିଶୟ କଷ୍ଟ ସହିବାରେ ଲାଗିଛୁ । ତେଣୁ ମୋ' କଥା ମାନି ସେହି କୋମଳ ପତ୍ରଶଯ୍ୟାରୁ ଉଠି ଶ୍ରୀକୃଷ୍ଣଙ୍କ ଆଡ଼କୁ ମୁଗ୍ଧନେତ୍ରରେ ଚାହିଁ ତୋ' ନୟନଯୁଗଳକୁ ସଫଳକର ।

**ଜନୟସି ମନସି କିମିତି ଗୁରୁଖେଦମ୍ ।**
**ଶୃଣୁ ମମ ବଚ଼ନମନୀହିତଭେଦମ୍ ॥ (ଚ଼)**

**ପଦ୍ୟ –** ନ ଧର ତୁ ତାପ ମନ । ମୋର ହିତବାଣୀ ଘେନ ॥
ମନରେ ନକର ଖେଦ । କୃଷ୍ଣରେ ନ କର ଭେଦ ॥

**ଗଦ୍ୟ –** ହେ ରାଧେ ! ତୁ ତୋ'ର ହୃଦୟକୁ ଆଉ ଏତେ କଷ୍ଟ ଦେ'ନା । କାରଣ ତୋ' ମନରେ ଯେଉଁ ଗୁରୁତର ଖେଦ ଜାତହୋଇଛି, ତା'ର କାରଣ ହେଉଛି – ତୋ'ର ଏହି ଅହେତୁକ ଅଭିମାନ । ମୁଁ ତୋର ହିତାକାଙ୍‌କ୍ଷିଣୀ ଏବଂ ଅନ୍ତରଙ୍ଗ ସଖୀ । ମୋ' କଥା ମାନି ଏବଂ ମୋ' ହିତବଚ଼ନ ଶୁଣି, ତୁ ମାଧବଙ୍କ ପ୍ରତି ଅଭିମାନ ତ୍ୟାଗକରିଦେ ।

**ହରିରୁପଯାତୁ ବଦତୁ ବହୁମଧୁରମ୍ ।**
**କିମିତି କରୋଷି ହୃଦୟମତିବିଧୁରମ୍ ॥ (ଛ)**

**ପଦ୍ୟ –** ମନଖେଦ ଦୂରକର । କୃଷ୍ଣ କହନ୍ତୁ ମଧୁର ।
ତେଜ ହୃଦୟ ବେଦନା । ନୁହ ଆଉ କୋପମନା ॥

**ଗଦ୍ୟ –** ହେ ରାଧିକେ ! ଶ୍ରୀକୃଷ୍ଣ ତୋ' କୁଞ୍ଜକୁ ଆସି ମଧୁର ଚାଟୁବାଣୀରେ ତୋତେ ମୁଗ୍ଧ କରନ୍ତୁ । ତୋ'ର ଏହି ବିରହଦଗ୍ଧ ହୃଦୟକୁ ଆଉ ଏତେ କଷ୍ଟ ଦେ'ନା । ଏହା ଫଳରେ ତୋର କିଛି ଲାଭ ହେବ ନାହିଁ, ବରଂ ତୁ ବିରହତାପାନଳରେ ଦଗ୍ଧ ହୋଇ ଶାନ୍ତି ପାଇ ପାରିବୁ ନାହିଁ ।

**ଶ୍ରୀଜୟଦେବଭଣିତମତିଲଳିତମ୍ ।**
**ସୁଖୟତୁ ରସିକଜନଂ ହରିଚ଼ରିତମ୍ ॥ (ଜ)**

**ପଦ୍ୟ –** ରସିକ ଜନଙ୍କ ଚିତ୍ତ । ଅତି ହରଷ ଉଦିତ ॥
ଶ୍ରୀଜୟଦେବ କଥିତ । କୃଷ୍ଣଚ଼ରିତ ଲଳିତ ॥

ଗଦ୍ୟ – ଶ୍ରୀଜୟଦେବ କବିରାଜ ଯେଉଁ ଅତି ମଧୁର ତଥା କୋମଳ କାନ୍ତ ପଦାବଳୀ-ବିଶିଷ୍ଟ ଶ୍ରୀହରିଙ୍କ ଚରିତ ବର୍ଣ୍ଣନ କରିଛନ୍ତି, ତାହା ଭକ୍ତରସିକଜନମାନଙ୍କ ଚିତ୍ତରେ ଆନନ୍ଦ ପ୍ରଦାନ କରୁ ।

**ସ୍ନିଗ୍ଧେ ଯଦ୍ ପରୁଷାସି ଯଦ୍ ପ୍ରଣମତି ସ୍ତବ୍ଧାସି ଯଦ୍ରାଗିଣି**
**ଦ୍ୱେଷସ୍ଥାସି ଯଦୁନ୍ମୁଖେ ବିମୁଖତାଂ ଯାତାସି ତସ୍ମିନ୍ ପ୍ରିୟେ ।**
**ତଦ୍‌ଯୁକ୍ତଂ ବିପରୀତକାରିଣି ତବ ଶ୍ରୀଖଣ୍ଡଚର୍ଚ୍ଚା ବିଷମ୍,**
**ଶୀତାଂଶୁସ୍ତପନୋ ହିମଂ ହୁତବହଃ କ୍ରୀଡ଼ାମୁଦୋ ଯାତନାଃ ।। ୨ ।**

ପଦ୍ୟ – ଶୋଭାପୁରୁଷ ମାଧବ । ଦେବଙ୍କ ଉପରେ ଦେବ ।।
ସେ ଆସି ତୋତେ ବିନୟେ । ମଧୁରବାଣୀରେ କହେ ।।
ଉନ୍ମୁଖେ ତାକୁ ନ କହୁ । ବିଧୁମୁଖେ ତାପ ସହୁ ।।
ଏ ତୋର ନୋହେ ବିହିତ । କାଳେ ହୋଏ ବିପରୀତ ।।
ଚନ୍ଦନ ହୋଇଛି ବିଷ । ଚନ୍ଦ୍ରକର ଭାନୁତ୍ରାସ ।।
ହିମରୁ ଶୀତ ପବନ । ହୋଏ ଅନଳ ସମାନ ।।
କ୍ରୀଡ଼ାରସ ତୋ'ର ଚିତ୍ତେ । ବାଧା ଦିଏ ହୃଦଗତେ ।।
ଘେନ ସଖି ମୋ' ଉତ୍ତର । ହରି ତୋ' ପ୍ରାଣଈଶ୍ୱର ।।
ତାଙ୍କଠାରେ ତୁ ବିମନ । ନୁହଁରେ ମୋ' ପ୍ରାଣଧନ ।।

× × × ×

ଗୋବିନ୍ଦ ପାଦଯୁଗଳ ନବବିକଚ କମଳ ।।
ମକରନ୍ଦ ଆଶେ ଭୃଙ୍ଗ ଧରଣୀଧର ସରାଗ ।।

ଗଦ୍ୟ – ହେ ଅଭିମାନିନୀ ରାଧିକେ ! ତୁ ଶ୍ରୀକୃଷ୍ଣଙ୍କ ପ୍ରତି ଆଦୌ ଭଲ ଆଚରଣ ଦେଖାଇନାହୁଁ । ସେ ପ୍ରେମପୂର୍ଣ୍ଣ କୋମଳ ବାଣୀରେ ତୋତେ ତୁଷ୍ଟ କରୁଥିଲେହେଁ, ତୁ ତାଙ୍କ ପ୍ରତି କଠୋର ବାଣୀ ପ୍ରୟୋଗ କରିଛୁ । ସେ ଅତ୍ୟନ୍ତ ବିନୟର ସହିତ ତୋ' ମାନଭଞ୍ଜନ ନିମିତ୍ତ ପ୍ରଣାମପୂର୍ବକ ନିବେଦନ କଲେ ମଧ ତୁ କାଷ୍ଠପାଷାଣ ପରି ନିଶ୍ଚଳ ହୋଇ ରହିଛୁ । ସେ ଅନୁରାଗପୂର୍ଣ୍ଣ ବାଣୀ ପ୍ରକାଶ କରନ୍ତେ, ତୁ ଦ୍ୱେଷପୂର୍ଣ୍ଣ କଥା କହି ତାଙ୍କୁ ଅପମାନିତ କରିଛୁ । ଶ୍ରୀକୃଷ୍ଣ ତୋତେ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କରିଛନ୍ତି, ଅଥଚ ତୁ ତାଙ୍କୁ ବିମୁଖ କରିବା ଭଳି ସମସ୍ତ ଆଚରଣ ପ୍ରକାଶକରିଛୁ । ତୋ'ର ପ୍ରାଣବଲ୍ଲଭ ପ୍ରିୟଙ୍କ ନିକଟରେ ତୁ ବାରମ୍ବାର ବିପରୀତ ଆଚରଣ ପ୍ରଦର୍ଶନ କରି, ତାଙ୍କ ମନରେ ଅଶେଷ କଷ୍ଟ ଦେଇଛୁ । ଏଇଥିପାଇଁ ଶ୍ରୀଖଣ୍ଡଚନ୍ଦନ ତୋତେ ବିଷ ପରି ବୋଧହେଉଛି । ଚନ୍ଦ୍ରଙ୍କର ଶୀତଳ କିରଣ ତୋତେ ମଧ୍ୟାହ୍ନ-ସୂର୍ଯ୍ୟଙ୍କ କିରଣ ପରି ପୀଡ଼ାଦାୟକ ହୋଇଛି ।

ଆହୁରି ମଧ୍ୟ ଏତିକିରେ ତୋର ଯାତନା ଶେଷହୋଇନାହିଁ; ହିମଶୀତଳ ପବନ ତୋତେ ଅଗ୍ନି ପରି ଦଗ୍ଧକରୁଛି ଏବଂ ରତିକ୍ରୀଡ଼ା ବିଷୟକ ସୁଖ ତୋ' ପକ୍ଷରେ ଯାତନାତୁଲ୍ୟ ମନେହେଉଛି । ଏଣୁ ତୁ ଅଭିମାନ ଭଙ୍ଗକରି ତାଙ୍କ ପ୍ରତି ବିମୁଖତା ତ୍ୟାଗକର । ନୋହିଲେ ଆହୁରି ଅଧିକ ଯାତନା ଭୋଗକରିବୁ ।

**ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**କଳହାନ୍ତରିତା ବର୍ଣ୍ଣନେ ମୁଗ୍ଧମୁକୁନ୍ଦୋ ନାମ ନବମଃ ସର୍ଗଃ ।। ***

□□□

* ଏହି ସର୍ଗ ଶେଷରେ ରାଣାକୁମ୍ଭାଙ୍କ ରସିକପ୍ରିୟା ଟୀକାସମ୍ବଳିତ 'ଗୀତଗୋବିନ୍ଦ'ରେ ଥିବା ''ସାନ୍ଦ୍ରାନନ୍ଦପୁରନ୍ଦର . . . . '' ଶୀର୍ଷକ ଶ୍ଳୋକଟି ଓଡ଼ିଶାର ପୋଥିମାନଙ୍କରେ ପରିଲକ୍ଷିତ ହୁଏ ନାହିଁ ।

# ଦଶମସର୍ଗ

ଅତ୍ରାନ୍ତରେ ମସୃଣରୋଷବଶାମସୀମ –
ନିଃଶ୍ୱାସନିଃସହମୁଖୀ ସୁମୁଖୀମୁପେତ୍ୟ ।
ସବ୍ରୀଡ଼ମୀକ୍ଷିତସଖୀବଦନାଂ ଦିନାନ୍ତେ
ସାନନ୍ଦଗଦ୍‌ଗଦପଦଂ ହରିରିତ୍ୟୁବାଚ ।୧।

ପଦ୍ୟ – ଏଥୁ ଅନନ୍ତରେ ଶୁଣ ହେ ସୁଜନେ ଅମୀୟ ମଧୁର ବାଣୀ ।
କୋପ ପ୍ରଶମିତ କରଇ ତରୁଣୀ ସହଚରୀ ବାଣୀ ଶୁଣି ।।
କୃଷ୍ଣଙ୍କୁ ନ ଦେଖି ଅନୁତାପେ ବାମା ଅନ୍ତରେ ଦହେ ମଦନ ।
ନିଃଶ୍ୱାସର ତାପ ସହି ନ ପାରଇ ଅତି ବିରସ ବଦନ ।।
ଏଥୁ ଅନନ୍ତରେ ଦିବସ ଅନ୍ତରେ ବିଜୟ କଲେ ମୁକୁନ୍ଦ ।
ଲଜ୍ଜାବତୀ ପ୍ରଣୟିନୀ ମୁଖ ଚାହିଁ ସାନନ୍ଦ ପରମାନନ୍ଦ ।।
ପ୍ରଦୋଷେ କୁଞ୍ଜରେ ପ୍ରବେଶି ମଦନସୁନ୍ଦର କହନ୍ତି ବାଣୀ ।
ପାଷାଣ ହେଲେହେଁ ତରଳିଯିବ ସେ ଗଦ୍‌ଗଦ ବଚନ ଶୁଣି ।।

ଗଦ୍ୟ – ଏହାପରେ ଦିବସ ଶେଷରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ନିକଟକୁ ଯାଇ ଆନନ୍ଦରେ ଗଦ୍‌ଗଦ ହୋଇ କହିଥିଲେ । ସେତେବେଳକୁ ସଖୀର ପ୍ରବୋଧନାରେ ରାଧାଙ୍କର କ୍ରୋଧ ପ୍ରଶମିତ ହୋଇଥିଲା । ବିରହତାପ ସହିନପାରି ତାଙ୍କ ନାସିକାରୁ ଖରନିଃଶ୍ୱାସ ବାହାରୁଥିଲା । ସେ ପ୍ରାଣପ୍ରିୟଙ୍କୁ ନିର୍ଦ୍ଦୟଭାବରେ ଭର୍ତ୍ସନା କରିଥିବାରୁ, ସଖୀମୁଖକୁ ଚାହିଁ ଲଜ୍ଜା ଅନୁଭବ କରୁଥିଲା । ଏପରି ଏକ ମଧୁମୟ ସୁଯୋଗରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ କୁଞ୍ଜରେ ସନ୍ଧ୍ୟାକାଳରେ ଉପସ୍ଥିତ ହୋଇ ଚାଟୁବାଣୀ ପ୍ରକାଶ କରିଥିଲେ ।

*[ଦେଶୀ ବରାଡ଼ୀ ରାଗେଣ ଗୀୟତେ (ଅଷ୍ଟମତାଳାଭ୍ୟାଂ ଗୀୟତେ) । (ଗୀତ—୧)]*

ବଦସି ଯଦି କିଂଚିଦପି ଦନ୍ତରୁଚିକୌମୁଦୀ,
ହରତି ଦରତିମିରମତିଘୋରମ୍ ।
ସ୍ଫୁରଦଧରସୀଧବେ ତବ ବଦନଚନ୍ଦ୍ରମା,
ରୋଚୟତୁ ଲୋଚନ-ଚକୋରମ୍ ।
ପ୍ରିୟେ ଚାରୁଶୀଳେ ମୁଂଚ ମୟି ମାନମନିଦାନମ୍ ।
ସପଦି ମଦନାନଳୋ ଦହତି ମମ ମାନସଂ
ଦେହି ମୁଖକମଳମଧୁପାନମ୍ (କ) । ଧ୍ରୁବମ୍ ।

**ପଦ୍ୟ –** ଶୁଣ ସୁନ୍ଦରି ! ପ୍ରାଣବନ୍ଧୁ ! ମୋ'ଠାରେ ଦୂରକର ବେଗେ ମାନ ।
ନିରତେ କାମ-ଅନଳ ଦହେ ମୋତେ ଦିଅ ମୁଖୁଁ ମଧୁପାନ ।।
କିଞ୍ଚିତ ବଚନ କହି ସଖି ! ହସ ଦିଶୁ ଦନ୍ତପନ୍ତି ତୋର ।
ଚନ୍ଦ୍ରକିରଣ ପ୍ରକାଶ କରି ହରୁ ଏ କାମ-ତିମିରଘୋର ।।
ବେନି ଲୋଚନ-ଚକୋର ମୋର ସୁଧା-ଲାଳସେ ଚଞ୍ଚଳ ଅତି ।
ଉଲ୍ଲସିତେ ତୋର ମୁଖଚନ୍ଦ୍ର ଟେକି ଚାହିଁଲେ ହୋଇବ ଶାନ୍ତି ।।

**ଗଦ୍ୟ –** ହେ ପ୍ରିୟେ ଚାରୁଶୀଳେ ! ମୋ' ଉପରେ ଯେଉଁ ଅଭିମାନ କରିଛ ତାହା ପରିତ୍ୟାଗ କର । ତୁମେ ଯଦି କରୁଣାପୂର୍ଣ୍ଣ ବଚନ ପଦଟିଏ ହେଲେ କହିବ, ତେବେ ଦନ୍ତଗୁଡ଼ିକର ଚନ୍ଦ୍ରମା ସଦୃଶ କିରଣରେ ମୋ' ମନରେ ଘୋଟିରହିଥିବା ଭୟରୂପକ ଅନ୍ଧକାର ଦୂରହୋଇଯିବ । ତୁମ ଅଧରରୁ ଅମୃତ ଝରିପଡୁଥିବାରୁ ତୁମ ମୁଖ ଚନ୍ଦ୍ରପରି ଶୋଭାମୟ ହୋଇଛି । ସୁଧାପୂର୍ଣ୍ଣ ସେହି ଚନ୍ଦ୍ରବଦନକୁ ଦେଖି ମୋର ନୟନ ରୂପକ ଚକୋର ଆନନ୍ଦ ଲାଭକରୁ । ଅର୍ଥାତ୍ ତୁମେ ହସିକରି ପଦେ କଥା କହିଲେ, ତୁମ ମୁଖଶୋଭା ଦେଖି ମୋ' ଅନ୍ତରରେ ଜାତହୋଇଥିବା ଭୟ ଦୂରହୋଇଯିବ ଏବଂ ମୋ' ନେତ୍ରଯୁଗଳ ଆନନ୍ଦରେ ଉତ୍ଫୁଲ୍ଲ ହୋଇଉଠିବ । ହେ ପ୍ରିୟେ, କାମାନଳ ମୋର ଅନ୍ତରକୁ ଦଗ୍‌ଧକରୁଛି । ତୁମେ ତୁମ ମୁଖକମଳରୁ ମଧୁପାନ କରାଇ ମୋ' ମାନସକୁ ପରିତୃପ୍ତକର ।

**ସତ୍ୟମେବାସି ଯଦି ସୁଦତି ମୟି କୋପିନୀ**
**ଦେହି ଖରନୟନଶରଘାତମ୍,**
**ଘଟୟ ଭୁଜବନ୍ଧନଂ ଜନୟ ରଦଖଣ୍ଡନମ୍**
**ଯେନ ବା ଭବତିସୁଖଜାତମ୍ ।। (ଖ)**

**ପଦ୍ୟ –** ନିଶ୍ଚୟେ ମାରିବାକୁ ମୋତେ ତୋହର କୋପ ଯେବେ ଅଛି ମନେ ।
ଦିଅ ତୀକ୍ଷ୍ଣଶର ଅପାଙ୍ଗ ଘାତକୁ ପୀଡ଼ ତୁ ଭୁଜବନ୍ଧନେ ।।
ଦଶନେ ଖଣ୍ଡିତ କର ମୋ' ଅଧର ଯେହ୍ନେ ତୋଷ ଲଭୁ ଚିତ୍ତ ।
ଏସନ ପ୍ରକାରେ ବିବିଧ ଦଣ୍ଡରେ ଦଣ୍ଡିବା ହେବ ଉଚିତ ।।

**ଗଦ୍ୟ –** ହେ ସୁନ୍ଦରି ! ତୁମେ ଯଦି ପ୍ରକୃତରେ ମୋ' ପ୍ରତି କୋପ କରିଥାଅ, ତେବେ ନୟନର କଟାକ୍ଷ ରୂପକ ତୀକ୍ଷ୍ଣଶରରେ ମୋ' ଶରୀରକୁ ଛିନ୍ନଭିନ୍ନ କରି (କିମ୍ବା ଖର ନଖର.... ତୀକ୍ଷ୍ଣନଖାଘାତ ରୂପକ ଶରରେ) ମୋତେ କାମପ୍ରବଣ କରାଅ । ଭୁଜବନ୍ଧନରେ ବାନ୍ଧି ମୋ' ଶରୀରକୁ ପୀଡ଼ିତ କର । ରତିବିଳାସରେ ମୋ' ଅଧରରେ ଦନ୍ତାଘାତକରି ମୋ' ମଦନାନଳକୁ ଉଦ୍ଦୀପିତ କରାଅ । ତୁମର ସମସ୍ତ ପୀଡ଼ା ସତ୍ତ୍ୱେ

ମୋ' ଶରୀରରେ ଅନିର୍ବଚ଼ନୀୟ ଆନନ୍ଦ ଜାତ ହେବ । ତେଣୁ ତୁମେ କୋପ ନକରି, ଏପରି ଭାବରେ ଦଣ୍ଡବିଧାନ କର; ଯାହା ଫଳରେ ଆମ ଦୁହିଙ୍କ ମନରେ ସୁଖ ଜାତ ହେବ ।

ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନମ୍
ତ୍ୱମସି ମମ ଭବଜଳଧିରତ୍ନମ୍ ।
ଭବତୁ ଭବତୀହ ମୟି ସତତମନୁରୋଧିନୀ
ତତ୍ର ମମ ହୃଦୟମତିଯତ୍ନମ୍ । (ଗ)

ପଦ୍ୟ – ତୁହି ସେ ମୋହର ଭୂଷଣ ଜୀବନ ତୁହି ଭବସିନ୍ଧୁ ରତ୍ନ ।
ତୁହି ସେ ନିରତେ ମୋ' ଅନୁରାଗିଣୀ ହୁଅ କରେ ହୃଦେ ଯତ୍ନ ।।

ଗଦ୍ୟ – ହେ ପ୍ରାଣେଶ୍ୱରି ! ତୁମେ ମୋର ଶରୀର ଭୂଷଣ, ତୁମେ ମଧ୍ୟ ମୋ' ଜୀବର ଜୀବନ ଅଟ । ଏହି ଭବସଂସାର ରୂପକ ମହାସମୁଦ୍ରରେ ତୁମେ ମୋର ରତ୍ନ ସ୍ୱରୂପ ଅଟ । ମୋର ଏହି ଅନୁନୟରେ ତୁମେ ମୋ' ପ୍ରତି ଅନୁକୂଳା ହୁଅ, ଅର୍ଥାତ୍ ମୋ' ଅନୁରୋଧପୂର୍ଣ୍ଣ ବଚ଼ନ ଶୁଣି, ତୁମେ ଅଭିମାନ ତ୍ୟାଗ କରି ମୋ' ପ୍ରତି ଅନୁରାଗଶାଳିନୀ ହୁଅ; ଏହାହିଁ ଆନ୍ତରିକତାର ସହିତ ମୁଁ ତୁମଠାରେ ନିବେଦନ କରୁଛି ।

ନୀଳନଳିନାଭମପି ତନ୍ୱି ତବ ଲୋଚ଼ନଂ
ଧାରୟତି କୋକନଦରୂପମ୍ ।
କୁସୁମଶରବାଣଭାବେନ ଯଦି ରଞ୍ଜୟସି
କୃଷ୍ଣମିଦମେତଦନୁରୂପମ୍ । (ଘ)

ପଦ୍ୟ – ଶୁଣ ସଜନି ! ତବ ଲୋଚ଼ନ ମନସିଜର ଅଟଇ ବାଣ ।
ମୋହ ହୃଦୟତଟକୁ ଭେଦିଣ ଆକୁଳ କରୁଛି ପ୍ରାଣ ।।
ନୀଳକମଳ ପ୍ରାୟେ ବର୍ଣ୍ଣ ଯାହାର ହୁଏ କୋକନଦ ବତ ।
ମୋହର ରୂପ କି ଅବଲିପ୍ତ କରି ଧରିଛି ରୂପ ଏମନ୍ତ ।।

ଗଦ୍ୟ – ହେ ସୁନ୍ଦରି ! ନୀଳକମଳ ସଦୃଶ ତୁମର ଏହି ନୟନ ଯୁଗଳ କ୍ରୋଧରେ ରକ୍ତପଦ୍ମ ପରି ଦିଶୁଛି । ଯଦି ତୁମେ ମୋତେ (କୃଷ୍ଣଙ୍କୁ) କାମବାଣ ସ୍ୱରୂପ ନେତ୍ରରେ ରଞ୍ଜିତ କରିବାକୁ ଚାହୁଁଥାଅ, ତେବେ ତୁମ ନେତ୍ରର ଲାଲିମା ଉପଯୁକ୍ତ ବୋଲି ମନେହୁଏ । ତୁମର ନୀଳବର୍ଣ୍ଣ ନୟନ ଯୁଗଳ ନିଜର ସ୍ୱାଭାବିକ ରଙ୍ଗ ହରାଇ ରକ୍ତବର୍ଣ୍ଣ ହୋଇଥିବାରୁ ତୁମେ ମୋ' ପ୍ରତି କଟାକ୍ଷପାତ କରି ମୋତେ ଅନୁରଞ୍ଜିତ କରୁଛ ବୋଲି ଯଦି ଚକ୍ଷୁ ରକ୍ତବର୍ଣ୍ଣ କରିଥାଅ, ତେବେ ମୋ'ଠାରେ ପ୍ରସନ୍ନା ହୁଅ ।

**ସ୍ଫୁରତୁ କୁଚ୍‌କୁମ୍ଭୟୋରୁପରି ମଣିମଞ୍ଜରୀ**
**ରଞ୍ଜୟତୁ ତବ ହୃଦୟଦେଶମ୍ ।**
**ରସତୁ ରସନାପି ତବ ଘନଜଘନମଣ୍ଡଳେ**
**ଘୋଷୟତୁ ମନ୍ମଥନିଦେଶମ୍ । (ଙ)**

ପଦ୍ୟ – ଏ ତୋହର ମଣିମୁକୁତାର ହାର ଭୂଷଣ ଯେ ହୃଦୟରେ ।
ନିର୍ମଳ ତରଳ ଏହୁ ଖେଳେ ସଖି ! କୁଚ୍‌କଳଶ ଉପରେ ।।
ଘନଜଘନ ଦେଶରେ ଖଞ୍ଜି ତୋର ମେଖଳା କିଙ୍କିଣୀ ମାଳା ।
ମନମଥ ଆଜ୍ଞା ଘୋଷଣା କରୁ ଏ ମଧୁର ଧ୍ୱନି ସରଳା ।।

ଗଦ୍ୟ – ହେ ଅଭିମାନିନୀ ! ତୁମର କୁଚ୍ ରୂପକ କଳସ ଯୁଗଳ ଉପରେ ମଣିହାର ରୂପକ ମଞ୍ଜରୀ ତୁମ ହୃଦୟଦେଶକୁ ଅନୁରଞ୍ଜିତ କରୁ । ତୁମ ପୃଥୁଳ ଜଘନଦେଶରେ କ୍ଷୁଦ୍ର ଘଣ୍ଟିକାଯୁକ୍ତ ଚନ୍ଦ୍ରହାର କାମଦେବଙ୍କ ନିର୍ଦ୍ଦେଶକୁ ଘୋଷଣା କରୁ । ଅର୍ଥାତ୍ ହେ ମାନବତି ! ତୁମେ ମାନଭଙ୍ଗ କରି, ମୋ ସହିତ ରତିକେଳି ଆରମ୍ଭକଲେ, ତୁମ କଣ୍ଠରେ ଲମ୍ବିଥିବା ମଣିହାର ସ୍ତନଯୁଗଳ ଉପରେ ଆନ୍ଦୋଳିତ ହେବ ଏବଂ ତୁମେ ସମ୍ପୂର୍ଣ୍ଣ ବିଗତବସନା ହୋଇ ବିପରୀତ ରତିରେ ମୋ' ସହିତ କେଳି କରନ୍ତେ, କ୍ଷୁଦ୍ର ଘଣ୍ଟିକାଯୁକ୍ତ ତୁମ ଚନ୍ଦ୍ରହାର ଜଘନଦେଶରେ ପଡ଼ି କିଣିକିଣି ନାଦରେ ଆମ ଦୁହିଙ୍କ ମନରେ ଆନନ୍ଦବର୍ଦ୍ଧନ କରିବ । ହେ ମାନମୟି ! ମୁଁ ଏହାହିଁ ଚାହୁଁଛି । ତୁମେ ଅନୁକୂଳା ହେଲେ ଏହା ସମ୍ଭବ ହେବ ।

**ସ୍ଥଳକମଳଗଞ୍ଜନଂ ମମ ହୃଦୟରଞ୍ଜନଂ**
**ଜନିତରତିରଙ୍ଗପରଭାଗମ୍ ।**
**ଭଣ ମସୃଣବାଣି କରବାଣି ଚରଣଦ୍ୱୟଂ**
**ସରସରସଦଲକ୍ତକରାଗମ୍ । (ଚ)**

ପଦ୍ୟ – ଶୁଣ ତୁ କୋମଳବଚ଼ନି ରେ ରାମା କରସି ମୋର ବଚ଼ନ ।
ଏ' ତୋର ଚରଣ ଦିଅ ମୁଁ କରଇଁ ଏଥେ ଅଲକ୍ତ ରଞ୍ଜନ ।।
ଯେବଣ ପାଦ ଗଞ୍ଜେ ସ୍ଥଳ କମଳ କୋଟିଏ ଲାବଣ୍ୟ ଜିଣି ।
ହୃଦୟ ମନ ମୋର ପୁଣି ରଞ୍ଜଇ ରତିରଙ୍ଗ ହୃଦ ଜାଣି ।।

ଗଦ୍ୟ – ହେ କୋମଳବଚ଼ନେ ! ତୁମେ ଯଦି ଅନୁରାଗିଣୀ ହୋଇ ଆଜ୍ଞା ଦେବ, ତେବେ ମୁଁ ତୁମ ପାଦଦୁଇଟିରେ ଅଳତା ଲଗାଇଦେବି । ଏହା ଫଳରେ ତୁମ ପାଦ ଦୁଇଟିର ବର୍ଣ୍ଣ ସ୍ଥଳକମଳକୁ ବଳିପଡ଼ିବ ଏବଂ ତାହା ମୋର ମନୋରଞ୍ଜକ ହେବ ଅର୍ଥାତ୍ ରତିକେଳି ସମୟରେ ତୁମର ପାଦ ଦୁଇଟିକୁ ମୁଁ ହୃଦୟଦେଶରେ ଧାରଣ କରି ନିଜକୁ ସୌଭାଗ୍ୟବାନ୍

ବୋଲି ମନେକରିବି । ତୁମ ପାଦଯୁଗଳରେ ଅଳତା ଲଗାଇଦେଲେ, ତାହା ସରସ ରତି କୌଶଳରେ ପରସ୍ପର ମନୋରଞ୍ଜକ ହୋଇପାରିବ ।

**ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ**
**ଦେହି ପଦପଲ୍ଲବମୁଦାରମ୍ ।**
**ଜ୍ୱଳତି ମୟି ଦାରୁଣୋ ମଦନକଦନାରୁଣୋ**
**ହରତୁ ତଦୁପାହିତବିକାରମ୍ । (ଛ)**

ପଦ୍ୟ – ମଦନଗରଳ ଖଣ୍ଡନ ତୋ' ପାଦ-ପଲ୍ଲବ, ଦିଅ ମୋ' ଶିର ।
ହରୁ ଦାରୁଣ କାମାନଳ ଶୀତଳ ହେଉ, ସର୍ବ ଅଙ୍ଗ ମୋର ।।

ଗଦ୍ୟ – ହେ ଅଭିମାନିନୀ ପ୍ରିୟେ ! କାମଦେବର ସନ୍ତାପରୂପକ ବିଷର ଖଣ୍ଡନକାରୀ ଏବଂ ମୋ' ମସ୍ତକର ଅଳଙ୍କାର ସ୍ୱରୂପ, କୋମଳ ପତ୍ର ସଦୃଶ ତୁମର ପଦଯୁଗଳକୁ ମୋ' ଶିରରେ ସ୍ଥାପନକର । କାରଣ, ଦାରୁଣ ମଦନବ୍ୟଥାରୂପକ ସୂର୍ଯ୍ୟତାପ ମୋର ଶିରକୁ ଅଶେଷ ତାପଦେଉଛି, ତା'ର ଉପଚାର ନିମିତ୍ତ ତୁମେ କୋମଳ ପତ୍ର ସ୍ୱରୂପ ପଦଯୁଗଳର ଛାୟା ପ୍ରଦାନକର । (ମାନବତୀ ନାରୀର ମାନଭଞ୍ଜନ ନିମିତ୍ତ ପ୍ରଣୟୀର ପାଦପତନ ଶ୍ରେଷ୍ଠ ଉପାୟ ବୋଲି କାମଶାସ୍ତ୍ରରେ ବର୍ଣ୍ଣନା ରହିଛି ।) ତା' ଫଳରେ ମୋ' ଶରୀରରୁ କାମବିକାର ଦୂରହୋଇଯିବ ।

**ଇତିଚଟୁଲଚାଟୁପଟୁଚାରୁ ମୁରବୈରିଣୋ**
**ରାଧିକାମଧିବଚନଜାତମ୍ ।**
**ଜୟତି ପଦ୍ମାବତୀରମଣଜୟଦେବକବିଭାରତୀ-**
**ଭଣିତମିତି ଗୀତମ୍ । (ଜ)**

ପଦ୍ୟ – ବିନୟଚଟୁଳ ଏ ଚାଟୁବଚନ, ରାଧାପ୍ରତି କୃଷ୍ଣବାଣୀ ।
ପଦ୍ମାବତୀପତି କବି ଜୟଦେବ, ଯାହା ସେ ବଚନେ ଭଣି ।।
ଆନନ୍ଦିତ କରୁ ରସିକ ମାନସ, ଗୀତ ଏ' ମଧୁର ଅତି ।
ଜୟଯୁକ୍ତ ହେଉ ଭକ୍ତଜନ ମୋହୁ , କବିରାଜଙ୍କ ଭାରତୀ ।।

ଗଦ୍ୟ – ଏହି ପ୍ରକାର ଚତୁରତା , ପ୍ରେମରସପୂର୍ଣ୍ଣ ତଥା ପଦ୍ମାବତୀରମଣ ଜୟଦେବଙ୍କ ଦ୍ୱାରା ପ୍ରଣୀତ ଶ୍ରୀରାଧାଙ୍କ ପ୍ରତି କୁହାଯାଇଥିବା ମୁରବୈରୀ ଶ୍ରୀକୃଷ୍ଣଙ୍କ ବାଣୀ ଭକ୍ତ ଜନତାର ମନୋରଞ୍ଜନକରୁ ।

**ପରିହର କୃତାତଙ୍କେ ଶଙ୍କାଂ ତ୍ୱୟା ସତତଂ ଘନ-**
**ସ୍ତନଜଘନୟାକ୍ରାନ୍ତେ ସ୍ୱାନ୍ତେ ପରାନବକାଶିନି ।**

ବିଶତି ବିତନୋରନ୍ୟୋ ଧନ୍ୟୋ ନ କୋଽପି ମମାନ୍ତରଂ
ସ୍ତନଭରପରିରମ୍ଭାରମ୍ଭେ ବିଧେହି ବିଧେୟତାମ୍ । ୨ ।

ପଦ୍ୟ – ଏ ତୋର ସ୍ତନଜଘନର ସଙ୍କଟେ / ପଡ଼ି ରହିଲା ମୋ' ମନ ।
କୁପିତ ଅନ୍ତର ନ ହୋଇ ଗୋ ମୋତେ / ଗାଢ଼େ ଦିଅ ଆଲିଙ୍ଗନ ॥
ଛାଡ଼ ଏବେ ଆତଙ୍କ ମନୁ ଶଙ୍କିତ ଭାବ / ପ୍ରବିଶ ରମ୍ୟ କାନନ ।
ଅବକାଶ କାହୁଁ ଅନ୍ୟ ରମଣୀରେ / ତୋର ଉପୁଜିଲା ମାନ ॥

ଗଦ୍ୟ – ହେ ମାନବତି ! ଅନ୍ୟ ରମଣୀ ପ୍ରତି ମୋ' ମନରେ ସ୍ପୃହା ରହିଛି ବୋଲି ତୁମ ହୃଦୟରେ ଯେଉଁ ଶଙ୍କାପୂର୍ଣ୍ଣ ଆତଙ୍କ ଜାତହୋଇଛି, ତାହା ଦୂର କରିଦିଅ । ତୁମର ସ୍ତନଜଘନଦ୍ୱାରା ଆକ୍ରାନ୍ତ ମୋ' ଅନ୍ତଃକରଣରେ ଅନ୍ୟ ନାୟିକାର ଚିନ୍ତା ମଧ୍ୟ ପ୍ରବେଶ କରିପାରିବନାହିଁ । କେବଳ ତୁମରି ଚିନ୍ତାରେ ଅନଙ୍ଗ ମୋର ଅନ୍ତରକୁ ପ୍ରବେଶ କରିବାରେ ସକ୍ଷମ ହୋଇଛି । ଏଣୁ ତୁମେ ମନରୁ ବୃଥା ଆଶଙ୍କା ଦୂରକରି, ମୋତେ ଆଲିଙ୍ଗନକର । ତୁମର କଠିନ ପୟୋଧର ଯୁଗଳର ସଂସ୍ପର୍ଶରେ ମୋ' ଅନ୍ତରରୁ ଅନଧିକାର ପ୍ରବେଶ କରିଥିବା ଅନଙ୍ଗ ମଧ୍ୟ ଦୂରହୋଇଯାଉ ।

ମୁଗ୍ଧେ ! ବିଧେହି ମୟି ନିର୍ଦ୍ଦୟଦନ୍ତଦଂଶ-
ଦୋର୍ବଲ୍ଲୀବନ୍ଧନିବିଡ଼ସ୍ତନପୀଡ଼ନାନି ।
ଚଣ୍ଡି ! ତ୍ୱମେବ ମୁଦମଞ୍ଚୟ ପଞ୍ଚବାଣ-
ଚଣ୍ଡାଳକାଣ୍ଡଦଳନାଦସବଃ ପ୍ରୟାନ୍ତୁ । ୩ ।

ପଦ୍ୟ – ଯେତେ ତୋର ନିର୍ଦ୍ଦୟ ଚିତ୍ତ କୁପିତ / ପୁଣ ବହଇ ତୋହରେ ।
ବାହୁଲତା ଭିଡ଼ି ଦନ୍ତକ୍ଷତ କଠିନ / ସ୍ତନେ ପୀଡ଼ା କର ମୋହରେ ॥
ଏ ତୋର ନୟନ ପଞ୍ଚଶର ମାର / ମୋ'ଠାରେ ଯେମନ୍ତ ଇଚ୍ଛା ।
ଚଣ୍ଡାଳ ମଦନ ହାତରୁ ମାନିନି ! ତୁ ମୋତେ କରସି ରକ୍ଷା ॥

ଗଦ୍ୟ – ହେ ମୁଗ୍ଧେ ! ମୁଁ ଯଦି ତୁମଠାରେ ଅପରାଧ କରିଛି, ତେବେ ତୁମେ ନିର୍ଦ୍ଦୟଭାବରେ ମୋତେ ଦନ୍ତରେ ଆଘାତକର । ଭୁଜରୂପକ ଲତାଜାଲରେ ମୋର ଶରୀରକୁ ବାନ୍ଧି ନିବିଡ଼ ତଥା କଠିନ ସ୍ତନଯୁଗଳରେ ମୋତେ ଅଶେଷ ପୀଡ଼ା ଦିଅ । ହେ କୋପନେ ! ଏପରି ଦଣ୍ଡବିଧାନ କରି ତୁମେ ଆନନ୍ଦିତ ହୁଅ ପଛକେ କିନ୍ତୁ ଚଣ୍ଡାଳ କାମଦେବର କାଣ୍ଡ ମୋ' ପ୍ରାଣ ହରଣ ନକରୁ । ଅର୍ଥାତ୍ ତୁମେ ଯେଉଁ ଦଣ୍ଡ ବିଧାନ କରିବ, ତାହା କାମବାଣ ବିପତ୍ତିରୁ ମୋ' ଜୀବନକୁ ରକ୍ଷା କରିବ । ତେଣୁ ହେ କୋପନେ, ତୁମେ ପଛକେ ଦଣ୍ଡଦିଅ କିନ୍ତୁ କାମଦଣ୍ଡରେ ମୋତେ ଦଣ୍ଡିତକରନାହିଁ ।

ଶଶିମୁଖି ! ତବ ଭାତି ଭଙ୍ଗୁରଭ୍ରୂ-
ର୍ଯୁବଜନମୋହକରାଳକାଳସର୍ପଃ ।

**ତଦୁଦିତଭୟଭଞ୍ଜନାୟ ଯୂନାଂ**
**ତ୍ୱଦଧରସୀଧୁସୁଧୈବ ସିଦ୍ଧମନ୍ତ୍ରଃ । ୪ ।**

ପଦ୍ୟ – ଭ୍ରୂଲତା ରୋଷଭରେ କୁଟିଳତର / ହୋଇ ଯୁବାଜନଙ୍କର ।
ବିହ୍ୱଳଜନକ କରାଳ ଯେ କାଳସର୍ପ / ସମାନ ଆକାର ।।
ଦେଖି ତା' ସଖି ! ଯେଉଁ ଭୟ ଉଦେ ହୁଏ / ତାହା ନିବାରଣ ପାଇଁ ।
ତୁମ୍ଭ ଅଧର ବିଗଳିତ ମଦିରା / ସୁଧା ଯେ ସିଦ୍ଧମନ୍ତ୍ର ହିଁ ।।

ଗଦ୍ୟ – ହେ ଶଶିମୁଖି ! ତୁମର କୁଟିଳଭ୍ରୂଭଙ୍ଗ ଯୁବାଜନଙ୍କୁ ମୋହିତ କରିବାରେ ଭୟଙ୍କର କାଳସର୍ପ ସଦୃଶ ଅଟେ । ଯୁବାଜନଙ୍କର ଭୟ ଭଞ୍ଜନ ନିମିତ୍ତ ତୁମର ଅଧରରୂପୀ ସୁଧା ହିଁ ଏକମାତ୍ର ସିଦ୍ଧମନ୍ତ୍ର, ଅର୍ଥାତ୍ ଅବ୍ୟର୍ଥ ମହୌଷଧ ବୋଲି ମୋର ଧାରଣା ହୋଇଛି ।

**ବ୍ୟଥୟତି ବୃଥା ମୌନଂ ତନ୍ୱି ! ପ୍ରପଞ୍ଚୟ ପଞ୍ଚମଂ**
**ତରୁଣି ! ମଧୁରାଳାପୈସ୍ତାପଂ ବିନୋଦୟ ଦୃଷ୍ଟିଭିଃ ।**
**ସୁମୁଖି ! ବିମୁଖୀଭାବଂ ତାବଦ୍ ବିମୁଞ୍ଚ ନ ମୁଞ୍ଚ ମାଂ**
**ସ୍ୱୟମତିଶୟସ୍ନିଗ୍ଧେ ମୁଗ୍ଧେ ! ପ୍ରିୟୋଽହମୁପସ୍ଥିତଃ । ୫ ।**

ପଦ୍ୟ – ବିଅର୍ଥେ ମଉନ ହେବାରୁ ସୁନ୍ଦରି ! ପୀଡ଼ାକରେ ମୋର ଚିତ୍ତ ।
ମଧୁରାଳାପ କୋକିଳ ବାଣୀ କୁହ / ମୋ' ସନ୍ତାପ ହେଉ ହତ ।
ଲୀଳାରେ ଅବଲୋକନ କର ମୋତେ / ଖେଦ ନ ରଖି ମନରେ ।
ବିବିଧ ପ୍ରକାରେ ମୁହିଁ ବୋଲୁଅଛି / ପ୍ରସନ୍ନ ହୁଅ ତୁ ମୋରେ ।।

ଗଦ୍ୟ – ହେ ତନ୍ୱି ! ତୁମେ ମୌନ ରହିବା ଫଳରେ ମୁଁ ଅଧିକ ଦୁଃଖ ଅନୁଭବ କରୁଛି । ତେଣୁ ମୋର ଅନୁରୋଧ, ପଞ୍ଚମସ୍ୱରରେ ମଧୁରାଳାପ କରି ଏବଂ ସ୍ନିଗ୍ଧ ଦୃଷ୍ଟିରେ ମୋତେ ଚାହିଁ ମୋ' ମନରୁ ସନ୍ତାପ ଦୂରକର ।

ହେ ସୁମୁଖି ! ମନରୁ ତୁମେ ବିମୁଖଭାବ ଦୂରକରି ମୋ' ମନରେ ଆନନ୍ଦ ବର୍ଦ୍ଧନକର । କିନ୍ତୁ କେବେହେଲେ ମୋତେ ତ୍ୟାଗକରନାହିଁ । ହେ ମୁଗ୍ଧେ ! ଅତିଶୟ ସ୍ନେହପାଶରେ ଆବଦ୍ଧ ତୁମରି ଏହି ପ୍ରିୟଜନ ନିଜେ ଆସି ତୁମଠାରେ ଉପସ୍ଥିତ ହୋଇଛି ।

**ବନ୍ଧୁକଦ୍ୟୁତିବାନ୍ଧବୋଽୟମଧରଃ ସ୍ନିଗ୍ଧୋ ମଧୂକଚ୍ଛବି-**
**ର୍ଗଣ୍ଡଶ୍ଚଣ୍ଡି ! ଚକାସ୍ତି ନୀଳନଳିନଶ୍ରୀମୋଚନଂ ଲୋଚନମ୍ ।**
**ନାସାଭ୍ୟେତି ତିଳପ୍ରସୂନପଦବିଂ କୁନ୍ଦାଭଦନ୍ତି ! ପ୍ରିୟେ !**
**ପ୍ରାୟସ୍ତ୍ୱନ୍ମୁଖସେବୟା ବିଜୟତେ ବିଶ୍ୱଂ ସ ପୁଷ୍ପାୟୁଧଃ । ୬ ।**

ପଦ୍ୟ – କାଳେ ତୋର ବଦନକୁ ଆଶ୍ରେ କରି ବିଶ୍ୱ ଜିଣିଲା ମଦନ ।
ପୁନରପି ଥୋଇ ପୁଷ୍ପପଞ୍ଚବାଣ ପାଶେ କରେ ଭୃତ୍ୟପଣ ।।

ଅଧର ବଧୂଲୀ ପୁଷ୍ପଜ୍ୟୋତି ଗଣ୍ଡ ଶୋଭେ ମଧୁକର ଆଭା ।
ନୀଳିମ ନଳିନ ଲୋଚନ ଲାବଣ୍ୟ ନାସା ତିଳପୁଷ୍ପ ଶୋଭା ।।
ଦଶନ କୁନ୍ଦକଳିକା ପ୍ରାୟ ଦେଖି ଶଙ୍କା ପାଏ ପଞ୍ଚଶର ।
ତ୍ରିଭୁବନ ଜୟ କରିବ ଲଭି ତୋ' ମୁଖଶୋଭା ନାରୀବର ।।

**ଗଦ୍ୟ** – ହେ କୋପନଶୀଳେ ! ତୁମର ଓଷ୍ଠ ଓ ଅଧର ବଧୂଲୀଫୁଲ ପରି ରକ୍ତବର୍ଣ୍ଣ ଦେଖାଯାଉଛି । ତୁମର ଗଣ୍ଡଦେଶ ମହୁଲ ଫୁଲର ଶୋଭା ଧାରଣ କରିଛି । ହେ ପ୍ରିୟେ ! ତୁମର ସଜଳ ନୟନଯୁଗଳର କାନ୍ତି ନୀଳୋତ୍ପଳର ସୌନ୍ଦର୍ଯ୍ୟକୁ ତିରସ୍କାର କରୁଛି । ତୁମ ନାସା ତିଳଫୁଲପରି ମନୋଜ୍ଞ ହୋଇଛି । ହେ କୁନ୍ଦଦନ୍ତୀ ପ୍ରିୟେ ! କେବଳ ତୁମରି ମୁଖମଣ୍ଡଳ ସଦୃଶ ପାଞ୍ଚଗୋଟି ପୁଷ୍ପ ରୂପକ ଶର ଲାଭ କରି ପୁଷ୍ପାୟୁଧ କନ୍ଦର୍ପ ବିଶ୍ୱବିଜୟ ପାଇଁ ପ୍ରସ୍ତୁତ ହେଉଛି । ଅର୍ଥାତ୍ ତୁମ ମୁଖମଣ୍ଡଳ ଏତେ ସୁନ୍ଦର ଯେ, ତାକୁ ଦେଖିଲେ ଯେ କୌଣସି ରସିକର ହୃଦୟ କାମବାଣରେ ବିଦୀର୍ଣ୍ଣ ହୋଇଯିବ ।

**ଦୃଶୌ ତବ ମଦାଳସେ ! ବଦନମିନ୍ଦୁରତ୍ୟୁଜ୍ଜ୍ୱଳଂ**
**ଗତିର୍ଜନମନୋରମା ବିଜିତରମ୍ଭମୂରୁଦ୍ୱୟମ୍ ।**
**ରତିସ୍ତବ କଳାବତୀ ରୁଚିରଚିତ୍ରଲେଖେ ଭ୍ରୁବା-**
**ବହୋ ବିବୁଧଯୌବତଂ ବହସି ତନ୍ୱି ! ପୃଥ୍ୱୀଗତା । ୭ ।**

**ପଦ୍ୟ** – ଅବନୀରେ ଜନ୍ମ ସ୍ୱର୍ଗ ଅପସରୀବୃନ୍ଦ ପ୍ରାୟ ଦିଶେ ଆଭା ।
ଯାହାର ଯେତେକ ଉତ୍ତମ ଗୁଣରେ ଘେନିଲୁ କି ସର୍ବଶୋଭା ।।
ଗମନ ତୋର ଜନମନ ମୋହଇ, ମନୋରମ ଚାରୁ ଗତି ।
ବିପରୀତ ରମ୍ଭା ଉରୁଯୁଗଳକୁ, ରମ୍ଭା ଦେଖି ପାଏ ଭ୍ରାନ୍ତି ।
ମଦଭରେ ପୂର୍ଣ୍ଣ ଅଳସ ଦୃଷ୍ଟି ଯା, ମଦାଳସା ଏହା ଭାବ ।
ବଦନ ତୋହର ଅକଳଙ୍କ ପୂର୍ଣ୍ଣ ଇନ୍ଦୁବତ ପ୍ରିୟଭାବ ।
ସୁନ୍ଦର ଭ୍ରୂଲତା ସୁରେଖିତ ତୋର, ଭୂରୁ ଚିତ୍ରରେଖାବତୀ ।
ରତିରସ କାଳେ ଅଟୁ ସୁକୁଶଳା ତେଣୁ ରମ୍ୟା କଳାବତୀ ।।
ଏମନ୍ତ ସକଳ ଗୁଣେ ସୁରଭିତା ସୁରସୁନ୍ଦରୀ ତୁ ବାମା ।
ମର୍ତ୍ତ୍ୟେ ଜନମିଛୁ ମୋ' ପ୍ରାଣ ମିତଣି ହେବାକୁ ମୋ' ମନୋରମା ।।

× × × ×

କୃଷ୍ଣ କୁତୂହଳ ଦଶମ ଏ ସର୍ଗ ଧରଣୀଧର ସୁରସ ।
ହରି ପାଦ ଘେନି ମୂର୍ଦ୍ଧନି ଦେଶରେ କରଇ କଳୁଷ ନାଶ ।।

**ଗଦ୍ୟ** – ହେ ମାନମୟି ! ତୁମର ନୟନ ଯୁଗଳ ସର୍ବଦା ଆନନ୍ଦରେ ଅଳସାୟିତ ହୋଇଛି । ତୁମର ମୁଖ-ସୁଷମା ପୂର୍ଣ୍ଣିମାଚାନ୍ଦର ଉଜ୍ଜ୍ୱଳତାକୁ ବଳିପଡ଼ିଛି । ତୁମର ଗତି

ଅତ୍ୟନ୍ତ ମନୋରମ ହୋଇଛି । ହେ ପ୍ରିୟେ ! ତୁମର ଜଙ୍ଘ ଓଲଟରମ୍ଭାକୁ ପରାଭୂତ କରୁଛି । ହେ ମୁଗ୍‌ଧେ ! ତୁମର ରତିକେଳି-କୌତୁକ ଅତ୍ୟନ୍ତ କଳାପୂର୍ଣ୍ଣ ଏବଂ ତୁମ ଭୂରୁ ଯୁଗଳ ମନୋରମ ଚିତ୍ରଲେଖା ପରି ଶୋଭାପାଉଛି । ଆଗୋ ତନୁପାତଳି ! ତୁମେ ପୃଥିବୀରେ ବିଚରଣ କରୁଥିଲେ ହେଁ, ସୁରସୁନ୍ଦରୀ ମଦାଳସା, ମନୋରମା, ରମ୍ଭା, କଳାବତୀ ଓ ଚିତ୍ରଲେଖାଙ୍କୁ ମଧ୍ୟ ସୌନ୍ଦର୍ଯ୍ୟରେ ପରାଭୂତ କରୁଛ ।

**ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ମାନିନୀବର୍ଣ୍ଣନେ ଚତୁରଚତୁର୍ଭୁଜ ନାମ ଦଶମଃ ସର୍ଗଃ ।** *

□□□

* ରସିକପ୍ରିୟା ଓ ରସମଞ୍ଜରୀ ଟୀକା ସମ୍ବଳିତ ଗୀତଗୋବିନ୍ଦ ପୁସ୍ତକରେ ''ସ ପ୍ରୀତିଂ ତନୁତାଂ ହରିଃ'' ଶୀର୍ଷକ ଗୋଟିଏ ଶ୍ଲୋକ ଅଧିକ ଅଛି । ସେହି ଶ୍ଲୋକଟି ଓଡ଼ିଶାର ପୋଥିମାନଙ୍କରେ ପରିଲକ୍ଷିତ ହୁଏ ନାହିଁ ।

## ଏକାଦଶସର୍ଗ

ସୁଚିରମନୁନୟେନ ପ୍ରୀଣୟିତ୍ୱା ମୃଗାକ୍ଷୀ
ଗତବତି କୃତବେଶେ କେଶବେ କୁଞ୍ଜଶଯ୍ୟାମ୍ ।
ରଚିତରୁଚିରଭୂଷାଂ ଦୃଷ୍ଟିମୋଷେ ପ୍ରଦୋଷେ
ସ୍ଫୁରତି ନିରବସାଦାଂ କାପି ରାଧାଂ ଜଗାଦ । ୧ ।

ପଦ୍ୟ – ଶୁଣ ହେ ସୁଜନ ଏଥି ସୁଧାରସ ବାଣୀ,
ରାଧାର ଅଗ୍ରତେ ସଖୀ କହେ ପୁଣ ପୁଣି ।।
ବହୁତ ବିନୟ କରି ତୋର ପ୍ରାଣନାଥ,
ଗମିଲା ଯେବଣ କୁଞ୍ଜଶଯ୍ୟା ସୁରଚିତ ।।
ରୁଚିର ସୁବେଶ ହୋଇ କୁରଙ୍ଗୀନୟନି,
ହରି ପାଶେ ଅଭିସାର କର ଗୋ ମିତଣି ।।
ପ୍ରସନ୍ନ ହୋଇଣ ମନେ ନକରସି ଖେଦ,
ସନ୍ଧ୍ୟାହିଁ ପ୍ରବେଶ ଆସି ଛାଡ଼ ଗୋ ବିଷାଦ ।।

ଗଦ୍ୟ – ବହୁସମୟ ଧରି ଅନୁନୟ ବିନୟ ବଚ଼ନରେ ମୃଗାକ୍ଷୀ (ରାଧିକା) ଙ୍କୁ ପରିତୋଷ କରାଇ ଶ୍ରୀକୃଷ୍ଣ ବେଶଭୂଷଣରେ ସୁସଜ୍ଜିତ ହୋଇ କେଳିକୁଞ୍ଜକୁ ଚଳିଯାଆନ୍ତେ; ଗାଢ଼ ଅନ୍ଧକାରମୟ ସନ୍ଧ୍ୟା ସମୟରେ ମନରୁ ସମସ୍ତ ଅବସାଦ ଦୂରକରାଇ ରତିକାଳୀନ ରୁଚିର ବେଶରେ ସଜ୍ଜିତା ହୋଇଥିବା ଶ୍ରୀରାଧାଙ୍କୁ କୌଣସି ଏକ ସଖୀ କହିଲା –

*[ ବସନ୍ତରାଗେଣ ଗୀୟତେ (ଯତିତାଳାଭ୍ୟାଂ ଗୀୟତେ) । (ଗୀତ – ୧) ]*

ବିରଚିତ-ଚାଟୁ-ବଚ଼ନରଚ଼ନଂ ଚରଣେ ରଚିତପ୍ରଣିପାତମ୍ ।
ସମ୍ପ୍ରତି ମଞ୍ଜୁଳବଞ୍ଜୁଳସୀମନି କେଳିଶୟନମନୁଯାତମ୍ ।
ମୁଗ୍ଧେ ! ମଧୁମଥନମନୁଗତମନୁସର ରାଧିକେ । (କ) । ଧ୍ରୁବମ୍ ।

ପଦ୍ୟ – ଅନେକ ପ୍ରକାରେ ଚାଟୁ କରି ନରହରି,
ଚରଣେ ତୋହର ଅତି ବିନୟ ସେ କରି ।।
ସୁନ୍ଦର ବେତସବନ ଲତା କେଳିସ୍ଥାନ,
ତୋର ଆଶେ ବସିଅଛି ଶ୍ରୀମଧୁସୂଦନ ।।
ବିଳମ୍ବ ନ କରି ଅଭିସର ପ୍ରାଣସହି !
ଶୁଭକାର୍ଯ୍ୟେ ହେଳା ତୋର ଉଚିତ ନୁହଁଇ ।।

ଗଦ୍ୟ -- ହେ ମୁଗ୍‌ଧେ ରାଧିକେ ! ଆଉ ବିଳମ୍ବ କାହିଁକି ? ଗାଢ଼ ଅନ୍ଧକାରପୂର୍ଣ୍ଣ ସନ୍ଧ୍ୟାସମୟ ଆସି ଉପସ୍ଥିତ ହେଲାଣି । ଶ୍ରୀକୃଷ୍ଣ ତୁମ ନିକଟରେ ନାନାପ୍ରକାର ଚାଟୁ ବଚ଼ନ କହିବା ସଙ୍ଗେ ସଙ୍ଗେ ଚରଣରେ ପ୍ରଣିପାତ ହୋଇ ତୁମକୁ ଆନନ୍ଦିତ କରାଇଛନ୍ତି । ବର୍ତ୍ତମାନ ସେ ମଞ୍ଜୁଳ ବେତସକୁଞ୍ଜରେ ତୁମ ସହିତ କେଳି କରିବା ଆଶାରେ ଶୟନ କରିଛନ୍ତି । ତୁମେ ଆଉ ବିଳମ୍ବ ନକରି ସେହି ମଧୁଦୈତ୍ୟର ନିଧନକାରୀ ଏବଂ ତୁମର ଏକାନ୍ତ ଅନୁଗତ ପ୍ରିୟ ଶ୍ରୀକୃଷ୍ଣଙ୍କ ନିକଟକୁ ଅଭିସାରରେ ଗମନକର ।

**ଘନଜଘନସ୍ତନଭାରଭରେ ଦରମନ୍ଥରଚ଼ରଣବିହାରମ୍**
**ମୁଖରିତମଣିମଞ୍ଜୀରମୁପୈହି ବିଧେହି ମରାଳବିକାରମ୍ । (ଖ)**

ପଦ୍ୟ – ଏ ତୋର ଘନଜଘନ ସ୍ତନଭାରଭରେ, ବଢ଼ାଅ ଚରଣ ସଖି ! ଅତି ଧୀରେ ଧୀରେ ॥
ରୁଣୁଝୁଣୁ ଧ୍ୱନି କରୁ ଏ ମଣିନୂପୁର, ଗମନ ତୋ' ଶୋଭା ପାଉ ମରମରାଳର ॥

ଗଦ୍ୟ – ହେ ରାଧିକେ ! ଉନ୍ନତ ସ୍ତନଭାର ଓ ବିପୁଳ ଜଘନଭାରରେ ଅବନତା ତୁମେ ପିନ୍ଧିଥିବା ମଣିମୟନୂପୁରର ମଧୁଗୁଞ୍ଜନରେ ବନସ୍ଥଳୀକୁ ମୁଖରିତ କରାଇ, ରାଜହଂସୀ ପରି ଶ୍ରୀକୃଷ୍ଣଙ୍କ ନିକଟକୁ ଅଭିସାର କର । ବନଗହନର ଅନ୍ଧକାରମୟ ପଥରେ ଯିବାବେଳେ ତୁମ ମନରେ ଯେଉଁ ଭୟ ଜାତ ହେବ, ସେଥିପାଇଁ ତୁମେ ଧୀରେ ଧୀରେ ପହଣ୍ଡ ପକାଇ ଅଗ୍ରସର ହେବ । ତେଣୁ ତୁମର ସେହି ମନ୍ଥର ଗତି ରାଜହଂସୀର ଗତିକୁ ନିଶ୍ଚିତ ଭାବରେ ତିରସ୍କାର କରିବ ।

**ଶୃଣୁ ରମଣୀୟତରଂ ତରୁଣୀଜନମୋହନମଧୁରିପୁରାବମ୍**
**କୁସୁମଶରାସନଶାସନବନ୍ଦିନି ! ପିକନିକରେ ଭଜ ଭାବମ୍ । (ଗ)**

ପଦ୍ୟ – ଶୁଣ ସଖି ! ମଧୁରିପୁ ମୁରଲୀର ଧ୍ୱନି,
ମୋହ କରୁଅଛି ଯୁବାବିରହୀ ତରୁଣୀ ॥
ମନସିଜ ଶାସନ ତୁ ବହିଛୁ ମିତଣି !
ମଧୁର ସୁସ୍ୱରେ ଭଜ କୋକିଳର ବାଣୀ ॥

ଗଦ୍ୟ – ଆଗୋ ସଖି ରାଧିକେ ! ହେଇ ଶୁଣ, ତରୁଣୀମାନଙ୍କ ଚିତ୍ତକୁ ମୋହିନେଉଥିବା ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ରମଣୀୟ ମୁରଲୀଧ୍ୱନି ଶୁଭୁଛି । ତୁମେ ବର୍ତ୍ତମାନ କାମଦେବଙ୍କ ଶରପୀଡ଼ାରେ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବକରି କାମଦଶାର ଅଧୀନା ହୋଇଛ । ତେଣୁ ତୁମେ ଶୀଘ୍ର ଶ୍ରୀକୃଷ୍ଣଙ୍କ ବେତସକୁଞ୍ଜରେ ପ୍ରବେଶ କରି, କୋକିଳଜିଣା ବାଣୀରେ ପ୍ରିୟତମଙ୍କୁ ସନ୍ତୋଷ କରାଅ ।

**ଅନିଳତରଳକିଶଳୟନିକରେଣ କରେଣ ଲତାନିକୁରମ୍ୟମ୍**
**ପ୍ରେରଣମିବ କରଭୋରୁ କରୋତି ଗତିଂ ପ୍ରତିମୁଞ୍ଚ ବିଳମ୍ବମ୍ । (ଘ)**

ପଦ୍ୟ – ସଧୀରେ ବହନ୍ତେ ମନ୍ଦ ମଳୟ ମରୁତ
ଚଳନ୍ତେ ଲତାର ଅଗ୍ରେ ନବ ମୃଦୁ ପତ୍ର ।।
କରପଲ୍ଲବରେ କି ଏ ଠାରୁଅଛି ତୋତେ
ହରି ପାଶେ ଅଭିସାର କର ତୁ ତୁରିତେ ।।

ଗଦ୍ୟ – ହେ କରଭୋରୁ ରାଧିକେ ! ପବନରେ ଆନ୍ଦୋଳିତ କୋମଳ ପତ୍ରଯୁକ୍ତ ଲତାସମୂହ ତୋର ଗମନ ପାଇଁ ଅନୁକୂଳ ହୋଇଛନ୍ତି । ଅର୍ଥାତ୍ ଲତାଗୁଡ଼ିକ ନିଜନିଜର କୋମଳ ପତ୍ରରୂପକ କରରେ ତୋତେ ସ୍ୱାଗତ ଜଣାଇ ଶୀଘ୍ର ଗମନ ଲାଗି ପ୍ରେରଣା ଦେଉଛନ୍ତି । ତେଣୁ ତୁମେ ଆଉ ଗମନରେ ବିଳମ୍ବ ନ କରି ଶୀଘ୍ର ଶୀଘ୍ର ପ୍ରାଣପ୍ରିୟଙ୍କ କୁଞ୍ଜକୁ ଅଗ୍ରସର ହୁଅ ।

**ସ୍ଫୁରିତମନଙ୍ଗତରଙ୍ଗବଶାଦିବ ସୂଚିତହରିପରିରମ୍ଭମ୍**
**ପୃଚ୍ଛ ମନୋହରହାରବିମଳଜଳଧାରମମୁଂ କୁଚକୁମ୍ଭମ୍ । (ଙ)**

ପଦ୍ୟ – ଭରସା ବଳିଲା ଭାବ ସୁରତି ତୋହର । କର ତୁ ଗମନ ସଖି ! ବିଳମ୍ବ ନକର ।।
ଘେନି ମୋହର ବଚନ ନହୁଅ ବିମନ । ହରଷ ହୋଇଣ ଚଳ ନିକୁଞ୍ଜ ସଦନ ।।
ମଦନ ତରଙ୍ଗେ ତନୁ ଅତିବଶ ହୋଇ । କୃଷ୍ଣେ ଆଲିଙ୍ଗନ କରିବାକୁ ମନଦେଇ ।।
ଉଲ୍ଲସିତ ହୁଏ କୁଚକୁମ୍ଭ ବେନି ତୋର । ଚଞ୍ଚଳତର ବିମଳ ମୁକୁତାର ହାର ।।

ଗଦ୍ୟ – ହେ ସଖି ରାଧିକେ ! ଯଦି ତୁମର ପବନର ପ୍ରେରଣା ଉପରେ ବିଶ୍ୱାସ ହେଉନାହିଁ, ତେବେ କାମଦେବଙ୍କ ରସତରଙ୍ଗିଣୀର ତରଙ୍ଗ ସଦୃଶ ତଥା କମ୍ପନଯୁକ୍ତ ତୋର ସ୍ତନରୂପକ କଳଶଦୁଇଟିକୁ ପଚାରି ବୁଝିଲୁ ! ତୋର ସ୍ତନଦୁଇଟି ମଧ ଶ୍ରୀକୃଷ୍ଣଙ୍କ ଆଲିଙ୍ଗନ ଲାଗି ବ୍ୟଗ୍ର ହୋଇଉଠିଲେଣି । ସେହି ସ୍ତନକଳଶ ଉପରେ ନିର୍ମଳ ଜଳଧାରା ସଦୃଶ ମଣିହାର ଲମ୍ବିତ ହୋଇଛି । ପ୍ରିୟତମର ମିଳନ କାମନାରେ ସ୍ତନଦ୍ୱୟ କମ୍ପିତ ହେବାରୁ, ତା' ଉପରେ ପଡ଼ିଥିବା ମଣିହାର ମଧ ଜଳଧାର ପରି କମ୍ପିତ ହେଉଛି । ତେଣୁ ତୁ ଆଉ ବିଳମ୍ବ ନକରି ଶୀଘ୍ର ପ୍ରାଣପ୍ରିୟଙ୍କ ନିକଟକୁ ଅଭିସାର କର ।

**ଅଧିଗତମଖିଳସଖୀଭିରିଦଂ ତବ ବପୁରପି ରତିରଣସଜ୍ଜମ୍**
**ଚଣ୍ଡି ! ରସିତରସନାରବଡ଼ିଣ୍ଡିମମଭିସର ସରସମଲଜ୍ଜମ୍ । (ଚ)**

ପଦ୍ୟ – ଲଜ୍ଜା ନିବାରିଣ ରତିରଣେ ସଜ ହୁଅ ।
ଦେଖନ୍ତୁ ସକଳ ସଖୀ କୃଷ୍ଣ ପାଶେ ଯାଅ ।।
କଟିମେଖଳା ଶବଦ କରୁ ଏ କିଙ୍କିଣୀ ।
ସୁରତି-ସମରେ ବୀର ଡିଣ୍ଡିମ ଏ ଜାଣି ।।

ଗଦ୍ୟ – ଆଗୋ ରସବତୀ ରାଧିକେ ! ତୋର ଆଉ ଲଜ୍ଜା କରିବାର କୌଣସି କାରଣ ନାହିଁ । କାରଣ ତୋ' ଜଘନଦେଶରେ ବେଷ୍ଟିତ ହୋଇଥିବା କ୍ଷୁଦ୍ର ଘଣ୍ଟିକାଯୁକ୍ତ ଚନ୍ଦ୍ରହାରର

ଶବ୍ଦ ଡିଣ୍ଡିମ ସଦୃଶ ତୋର ମନୋଭାବ ଏବଂ ଅଭିସାର ବିଷୟରେ ସବୁକିଛି ଜଣାଇ ଦେଇସାରିଲେଣି । ତୁ ସୁରତରୂପକ ସଂଗ୍ରାମ ପାଇଁ ପୂର୍ଣ୍ଣମାତ୍ରାରେ ସଜ୍ଜିତା ହୋଇଛୁ ବୋଲି ତୋ ସଖୀମାନେ ଜାଣି ସାରିଲେଣି । ତେଣୁ ତୁ ଆଉ ଲଜ୍ଜା ନ କରି ଶୀଘ୍ର ଅଭିସାର କର ।

**ସ୍ମରଶରସୁଭଗନଖେନ କରେଣ ସଖୀମବଲମ୍ବ୍ୟ ସଲୀଳମ୍**
**ଚଳ ବଳୟକ୍ୱଣିତୈରବବୋଧୟ ହରିରପି ନିଜଗତିଶୀଳମ୍ । (ଛ)**

ପଦ୍ୟ — ମନସିଜ ଶର ଏ ସୁନ୍ଦର ନଖ ତୋର ।
ଲୀଳାହଂସଗମନି ! ଦୋଳାଇ ଚାଲ କର ।।
ଚଳନ୍ତେ ବଳୟ କଙ୍କଣ କ୍ୱଣିତ ଧ୍ୱନି ।
ଉଜାଗର ହେଉ ହରି ତବ ଗତି ଶୁଣି ।।

ଗଦ୍ୟ — ହେ ରାଧିକେ ! କନ୍ଦର୍ପର ବାଣ ସଦୃଶ ତୀକ୍ଷ୍ଣ ନଖଯୁକ୍ତ କରରେ ସଖୀ (ମୋର) ର ହାତକୁ ଧରି ଶୀଘ୍ର ଶୀଘ୍ର ଗମନ କର । ତୁ ମୋ' ହାତ ଧରି ଶୀଘ୍ର ଗତିରେ ଗମନକଲେ, ହସ୍ତରେ ଥିବା ବଳୟର ଶବ୍ଦରୁ ଶ୍ରୀକୃଷ୍ଣ ଜାଣିପାରିବେ ଯେ, ତୁ ତାଙ୍କ ନିକଟକୁ ଚଞ୍ଚଳ ଅଭିସାର କରୁଛୁ ଏବଂ ତା' ଫଳରେ ସେ ନିଶ୍ଚୟ ଆଶ୍ୱସ୍ତ ହେବେ ।

**ଶ୍ରୀଜୟଦେବଭଣିତମଧରୀକୃତହାରମୁଦାସିତବାମମ୍**
**ହରିବିନିହିତମନସାମଧିତିଷ୍ଠତୁ କଣ୍ଠତଟୀମବିରାମମ୍ । (ଜ)**

ପଦ୍ୟ — ଅତ୍ୟନ୍ତ ନିର୍ମଳ ଯେ ମୁକୁତାହାର ପ୍ରାୟେ ।
ପଦକୁ ପଦ ରଚିଲେ ରାଧାକୃଷ୍ଣ ଲୟେ ।।
ଜୟଦେବବାଣୀ କୃଷ୍ଣକଥାରେ ଯା' ଚିତ୍ତ ।
ତା'ର କଣ୍ଠେ ଏହୁ ମାଳରୂପେ ଗୋପୀନାଥ ।।
ଏ ପଦ ଶ୍ରବଣେ ମୁକ୍ତାହାର ତେଜି ଜନେ ।
କାମିନୀଙ୍କି ତେଜି ମଜ୍ଜିବେ ଏ ଗୀତଗାନେ ।।

ଗଦ୍ୟ — ଶ୍ରୀଜୟଦେବ କବିରାଜଙ୍କ ପ୍ରଣୀତ ଏହି ଗୀତଗୁଡ଼ିକ ଭକ୍ତ ଜନତାର ମାନସ ପଟଳରେ ତଥା କଣ୍ଠତଟରେ ନିରବଚ୍ଛିନ୍ନ ଭାବରେ ବିରାଜମାନ କରୁ । ଏହି ଗୀତଗୋବିନ୍ଦରେ ସନ୍ନିବେଶିତ ଗୀତଗୁଡ଼ିକ ମୁକ୍ତାହାରକୁ ତିରସ୍କାର କରୁଛି ଏବଂ ଏହି ଗୀତରସରେ ମଜ୍ଜିଯାଇ ରସିକଜନମାନେ କାମିନୀମାନଙ୍କ ପ୍ରତି ଉଦାସୀନଭାବ ପ୍ରଦର୍ଶନ କରୁଛନ୍ତି ।

**ସା ମାଂ ଦ୍ରକ୍ଷ୍ୟତି ବକ୍ଷ୍ୟତି ସ୍ମରକଥାଂ ପ୍ରତ୍ୟଙ୍ଗମାଲିଙ୍ଗନୈଃ**
**ପ୍ରୀତିଂ ଯାସ୍ୟତି ରଂସ୍ୟତେ ସଖି ! ସମାଗତ୍ୟେତି ଚିନ୍ତାକୁଳଃ ।**

**ସ ତ୍ୱାଂ ପଶ୍ୟତି ବେପତେ ପୁଲକୟତ୍ୟାନନ୍ଦତି ସ୍ୱିଦ୍ୟତି**
**ପ୍ରତ୍ୟୁଦ୍‌ଗଚ୍ଛତି ମୂର୍ଚ୍ଛତି ସ୍ଥିରତମଃପୁଞ୍ଜେ ନିକୁଞ୍ଜେ ପ୍ରିୟଃ । । ୨ ।**

**ପଦ୍ୟ**—ସେ ତୋହର ପତି ଅତି ଆକୁଳଭରରେ । ନିକୁଞ୍ଜ ସଦନେ ବସି ବିଚାରେ ମନରେ ।।
କାମ-ବିକାରରେ ରାମା ତୋତେ ଦେଖୁଥିବ । ଅତି ପ୍ରୀତ ହୋଇ ଆଲିଙ୍ଗନ ସେ କରିବ ।।
ଏମନ୍ତ ବିଚାରି ମନେ ଯେବେ ଦେଖୁଥିବ । କମ୍ପମାନ ହୋଇ ତନୁ ପୁଲକ ହୋଇବ ।।
ଆନନ୍ଦରେ ପ୍ରକାଶ ହୋଇବ ସ୍ୱେଦ ନୀର । ବହୁଥିବ ନୟନୁ ଲୋତକ ଝର ଝର ।।
ପାଛୋଟି ସେ ଆସୁଥିବ ହୋଇ ତତପର । ଫେରି ନିକୁଞ୍ଜେ ମୂର୍ଚ୍ଛିତ ହେବ ପ୍ରିୟ ତୋର ।।

**ଗଦ୍ୟ** – ଆଗୋ ଅଭିସାରିକେ ! ନିବିଡ଼ ଅନ୍ଧକାରପୂର୍ଣ୍ଣ ବେତସ କୁଞ୍ଜରେ ତୁମର ପ୍ରାଣପ୍ରିୟ ଶ୍ରୀକୃଷ୍ଣ ଅତ୍ୟନ୍ତ ଚିନ୍ତାକୁଳ ହୋଇ ଭାବୁଥିବେ – 'ମୁଁ ଏତେ ଅପରାଧ କରିଥିଲେହେଁ ମୋ' ପ୍ରାଣପ୍ରିୟା ଅଭିସାରରେ ମୋ' କୁଞ୍ଜକୁ ଆସି ମୋତେ ପ୍ରେମବିହ୍ୱଳିତ ଚିତ୍ତରେ ଅବଲୋକନ କରିବ । କେବଳ ସେତିକି ନୁହେଁ, ସେ ଆହୁରି ମଧ୍ୟ ନିଜର କାମଦଶା ବିଷୟ ବର୍ଣ୍ଣନା କରି ମୋତେ ଉଚ୍ଚାଟ କରିବ । ପ୍ରାଣପ୍ରିୟା ମୋ' ଅଙ୍ଗ ପ୍ରତ୍ୟଙ୍ଗକୁ ଆଲିଙ୍ଗନ କରି ଅତ୍ୟନ୍ତ ଆନନ୍ଦିତା ହେବ । ତା'ପରେ ମୋ' ପ୍ରିୟତମା ମୋ' ସହିତ ସୁରତକ୍ରୀଡ଼ାରେ ମାତି ମୋତେ ପ୍ରମୁଦିତ କରାଇବ' । ଆଗୋ ସଖୀ ରାଧିକେ ! ତୋ' ପ୍ରିୟତମ ଏହିପରି କେତେ କ'ଣ ତୋ' ବିଷୟକ ଚିନ୍ତାରେ ଧ୍ୟାନମଗ୍ନ ହୋଇ ତୋର ମନୋଜ୍ଞ ରୂପକୁ ଅବଲୋକନ କରିବେ । ତା' ପରେ ତାଙ୍କ ଶରୀରରେ ବିରହଜନିତ କମ୍ପନ ସୃଷ୍ଟି ହେବ । ସେହି କମ୍ପନ ଫଳରେ ତାଙ୍କ ଶରୀର ରୋମାଞ୍ଚିତ ହୋଇଉଠିବ । ସେ ଆନନ୍ଦରେ ଅଧୀର ହୋଇଉଠିବା ଫଳରେ ତାଙ୍କ ଶରୀରରେ ସାତ୍ତ୍ୱିକଭାବ ଜାତହେବ ଏବଂ ତା'ପରେ ସେ ଝାଳରେ ସୁତୁବୁତୁ ହୋଇଯିବେ । ତୁ କୁଞ୍ଜମଧ୍ୟକୁ ପ୍ରବେଶ କରିଛୁ ବୋଲି ଭାବି ଦ୍ୱାର ନିକଟକୁ ଚାଲିଆସୁଥିବେ ଏବଂ ଦ୍ୱାରଦେଶରେ ତୋତେ ନପାଇ ପୁଣି ନିରାଶ ହୋଇ ଫେରିଯାଇ ମୂର୍ଚ୍ଛିତ ହୋଇପଡୁଥିବେ । ହେ ସଖି ! ତୋ' ବିରହରେ କନ୍ଦର୍ପର ଦଶଦଶା (ସ୍ତମ୍ଭ, ରୋମାଞ୍ଚ, ପୁଲକ, କମ୍ପନ ଓ ମୂର୍ଚ୍ଛା ଆଦି) ମଧ୍ୟରୁ ନଅଗୋଟି ଦଶା ଭୋଗିସାରିବେଣି । ତାଙ୍କର ଦଶମଦଶା (ମୃତ୍ୟୁ) ପ୍ରାପ୍ତ ହେବା ପୂର୍ବରୁ ତୁ ଶୀଘ୍ର ଯାଇ ତାଙ୍କ କୁଞ୍ଜରେ ଉପସ୍ଥିତ ହୋଇଯା ।

**ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ ଶ୍ରବଣୟୋସ୍ତାପିଞ୍ଛଗୁଚ୍ଛାବଳୀ**
**ମୂର୍ଦ୍ଧ୍ନି ଶ୍ୟାମସରୋଜଦାମ କୁଚୟୋଃ କସ୍ତୁରିକାପତ୍ରକମ୍ ।**
**ଧୂର୍ତ୍ତାନାମଭିସାରସମ୍ଭ୍ରମଜୁଷାଂ ବିଷ୍ୱଙ୍‌ନିକୁଞ୍ଜେ ସଖି !**
**ଧ୍ୱାନ୍ତଂ ନୀଳନିଚୋଳଚାରୁସୁଦୃଶାଂ ପ୍ରତ୍ୟଙ୍ଗମାଲିଙ୍ଗତି । ୩ ।**

**ପଦ୍ୟ** – ଅନେକ ପ୍ରକାରେ ସେ କହନ୍ତେ ପ୍ରିୟସଖୀ ।
ଶ୍ରବଣେ ସୁବେଶ ହୋଏ ସେ ଚନ୍ଦ୍ରମାମୁଖୀ ।।

ଖଞ୍ଜନ ନୟନେ ଅଞ୍ଜନର ରେଖା ରଞ୍ଜି ।
କର୍ଣ୍ଣରେ ନୀଳ ତମାଳ ଅବତଂସ ଖଞ୍ଜି ।।
ଶିରେ ନୀଳୋତ୍ପଳ ପୁଷ୍ପମାଳା ସୁରଚିତ ।
ସ୍ତନତଟେ ମୃଗମଦ କସ୍ତୂରୀ ଲେଖିତ ।।
ଅସିତ ନିଚୋଳେ ତନୁ ଆଚ୍ଛାଦିତ କରି ।
ଚତୁରୀ ଅଭିସାରିକା ଗମନ୍ତି ସୁନ୍ଦରୀ ।।
ନୀଳ ପରିଧାନ ପ୍ରାୟେ ଗାଢ଼ ଅନ୍ଧକାର ।
ଆଲିଙ୍ଗନ କରିବ ତୋ' ଚାରୁ କଳେବର ।।

ଗଦ୍ୟ – ହେ ସଖି ! ଆଖିରେ ଅଞ୍ଜନ, କର୍ଣ୍ଣଯୁଗଳରେ ଗାଢ଼ ନୀଳବର୍ଣ୍ଣ ତମାଳ ସ୍ତବକଗୁଚ୍ଛ, ଶିରରେ ନୀଳକମଳର ମାଳା, ସ୍ତନମଣ୍ଡଳରେ କସ୍ତୂରୀରେ ଚିତ୍ରିତ ପତ୍ରାବଳୀ ରଚନା କରି ଚତୁରୀ ନାୟିକାମାନେ ଅଭିସାରରେ ବାହାରିଥାଆନ୍ତି । କାରଣ ଗାଢ଼ ଅନ୍ଧାର ରଜନୀରେ ଏହାହିଁ ହେଉଛି ଅଭିସାର-ଉପଯୋଗୀ ଭୂଷଣ । ଏହାର ବିଶେଷ କାରଣ ହେଉଛି ସେମାନେ ସର୍ବାଙ୍ଗରେ ପରିଧାନ କରିଥିବା କୃଷ୍ଣବର୍ଣ୍ଣର ଶାଢ଼ୀ ପରି, ନିକୁଞ୍ଜ ସଦନରେ ଗାଢ଼ ଅନ୍ଧକାର ଘୋଟି ସେମାନଙ୍କ ଶରୀରକୁ ଆଲିଙ୍ଗନ କରିଥାଏ । ସର୍ବାଙ୍ଗରେ କୃଷ୍ଣବର୍ଣ୍ଣ ଭୂଷଣ ତଥା ଅନ୍ଧକାର ସଦୃଶ କୃଷ୍ଣ ପରିଧାନ ଫଳରେ ତୋର ଗମନ ମଧ ବାରି ହେବନାହିଁ । ତେଣୁ ତୁ ମଧ ଅନୁରୂପ ବେଶବାସରେ ସଜ୍ଜିତା ହୋଇ ଆଉ ଲଜ୍ଜା ଓ ସଙ୍କୋଚ ନକରି ଶୀଘ୍ର ଅଗ୍ରସର ହୁଅ ।

**କାଶ୍ମୀରଗୌରବପୁଷାମଭିସାରିକାଣା-**
**ମାବଦ୍ଧରେଖମଭିତୋ ରୁଚିମଞ୍ଜରୀଭିଃ ।**
**ଏତତ୍ତମାଳଦଳନୀଳତମଂ ତମିସ୍ରଂ**
**ତତ୍ପ୍ରେମହେମନିକଷୋପଳତାଂ ତନୋତି । ୪ ।**

ପଦ୍ୟ—ସାତ୍ତ୍ୱିକ ହୃଦୟ ହୋଇ ହରିଣୀ ନୟନୀ । ପ୍ରିୟ କ୍ରୀଡ଼ାରସେ ମଜ୍ଜିଥାଏ ମନ ଘେନି ।।
ଗମଇ ନିକୁଞ୍ଜ ଲତା ଘନଘୋର ବନେ । ପତି ତାକୁ ଆଲିଙ୍ଗନ କରଇ ସଘନେ ।।
ଅଭିସାରିକାର ବପୁ ଲାବଣ୍ୟ ସୁଜ୍ୟୋତି । କୁଙ୍କୁମେ ଅଙ୍କିତ ସେ ଗଉରବର୍ଣ୍ଣ କାନ୍ତି ।।
ଘନତିମିର ନୀଳ ତମାଳ ତନୁ ଆଭା । ରାମାବର ତନୁ ତଥି ହେମଲତା ଶୋଭା ।।
କନକ କଷିଲା ପ୍ରାୟେ କଷଟି ପଥରେ । ଦିଶଇ ତା' ମନୋରମ ଦୃଶ୍ୟ ଅନ୍ଧକାରେ ।।

ଗଦ୍ୟ – କୁଙ୍କୁମ ସଦୃଶ ଗୌରବର୍ଣ୍ଣା ନାଗରୀମାନେ ଅଭିସାର ସମୟରେ ମଣିମଞ୍ଜରୀରେ ପରିବ୍ୟାପ୍ତ ହୋଇ, ତମାଳପତ୍ରସଦୃଶ ଗାଢ଼ ଅନ୍ଧକାର ମଧ୍ୟରେ ଗମନ କରୁଥିବା ସମୟରେ, ସେ ଦୃଶ୍ୟ ସୁବର୍ଣ୍ଣକୁ କଷଟି ପଥରରେ କଷିଲାପରି ଉଦ୍‌ଭାସିତ ହୋଇଉଠେ । ସତେଅବା ନାୟିକାର ପ୍ରେମରୂପକ ଶୁଦ୍ଧସୁବର୍ଣ୍ଣ ସେହି ଅନ୍ଧକାର ସଦୃଶ

କୃଷ୍ଣବର୍ଣ୍ଣ କଷଟି ପଥରରେ ପରୀକ୍ଷିତ ହେଉଛି କି ? ଅର୍ଥାତ୍ ହେ ସଖି ! ତୋ' ପରି ଗୌରବର୍ଣ୍ଣା କନକଗୋରୀ, ଶ୍ରୀକୃଷ୍ଣଙ୍କ ନବଘନ ଶରୀର ସଦୃଶ କଷଟି ପଥରରେ ଚହଟିଉଠିବ ।

ହାରାବଳୀତରଳକାଞ୍ଚନକାଞ୍ଚିଦାମ-
କେୟୂରକଙ୍କଣମଣିଦ୍ୟୁତିଦୀପିତସ୍ୟ ।
ଦ୍ୱାରେ ନିକୁଞ୍ଜନିଳୟସ୍ୟ ହରିଂ ନିରୀକ୍ଷ୍ୟ
ବ୍ରୀଡ଼ାବତୀମଥ ସଖୀ ନିଜଗାଦ ରାଧାମ୍ । ୫ ।

ପଦ୍ୟ—ଚରଣେ ନୂପୁର କରେ କନକ କଙ୍କଣ । ଜଡ଼ିତ ହୋଇଛି ଯହିଁ ନାନା ମଣିଗଣ ।।
ସଭୟ ହୋଇଣ ମରକୁଞ୍ଜର ଗମନୀ । ପ୍ରବେଶ କୁଞ୍ଜ ସଦନେ ସଖୀ ସଙ୍ଗେ ଘେନି ।।
ତରଳ ସରଳ ଅମଳ ମୁକୁତା ହାର । କଟିତଟେ ମେଖଳା କିଙ୍କିଣୀ ସୁବର୍ଣ୍ଣର ।।
ନୂପୁର କରଭୂଷଣ ବଳୟ ବିରାଜେ । ନାନା ରତ୍ନ-ମଣିଗଣ ତେଜପୁଞ୍ଜ ଗଞ୍ଜେ ।।
ନିକୁଞ୍ଜ ସଦନ ଦ୍ୱାରେ ମିଳି ଶଶିମୁଖୀ । ସଲଜ୍ଜ ହୋଇଲା ଶ୍ରୀକୃଷ୍ଣର ମୁଖ ଦେଖି ।।
ଉତ୍ସୁକେ ଅପାଙ୍ଗେ ଚାହିଁ ନୁହଁଇ ବଦନ । ଦେଖି ବୋଇଲା ଚତୁରୀ ସଖୀ ରାଧେ ! ଶୁଣ ।।

ଗଦ୍ୟ – କନକମୟ ହାରାବଳୀ ମଣିନିର୍ମିତ କେୟୂର କଙ୍କଣ ତଥା ଚନ୍ଦ୍ରହାର ବା ଅଣ୍ଟାସୂତାର ସ୍ନିଗ୍ଧ ତଥା ତରଳ ଦ୍ୟୁତିରେ ଝଲମଲ ହୋଇ ଶୋଭା ପାଉଥିବା ନିକୁଞ୍ଜସଦନରେ ଶ୍ରୀକୃଷ୍ଣଙ୍କୁ ଅବଲୋକନ କରି ଅତିଶୟ ଲଜ୍ଜାରେ ଜୁଡୁବୁଡୁ ହୋଇଥିବା ଶ୍ରୀରାଧାଙ୍କୁ ସଖୀ କହିଥିଲା ।

*[ଦେଶ ବରାଡ଼ି ରାଗେଣ ଗୀୟତେ (ରୂପକ ତାଳାଭ୍ୟାଂ ଗୀୟତେ) । (ଗୀତ-୨)]*

ମଞ୍ଜୁତରକୁଞ୍ଜତଳକେଳିସଦନେ
ପ୍ରବିଶ ରାଧେ ! ମାଧବସମୀପମିହ ।
ବିଳସ ରତିରଭସହସିତବଦନେ । (କ) । ଧ୍ରୁବମ୍ ।

ପଦ୍ୟ – ସୁନ୍ଦର ନିକୁଞ୍ଜ ଲତା କ୍ରୀଡ଼ାର ମନ୍ଦିର । ପରବେଶ ହୁଅ ତୁ ମାଧବ ସନ୍ନିଧିର ।।
ମଦନେ ଉନ୍ମତ୍ତ ତୋର ବଦନ ସହାସ୍ୟ । କର ସଖି ! ବିବିଧ ପ୍ରକାରେ କେଳିରସ ।।

ଗଦ୍ୟ – ହେ ରାଧେ ! ଅତ୍ୟନ୍ତ ମନୋଜ୍ଞ କୁଞ୍ଜଗୃହ ଭିତରକୁ ତୁ ପ୍ରବେଶ କର । ସୁରତ କ୍ରୀଡ଼ା ଉପଯୋଗୀ ସକଳ ମନୋରମ ପରିବେଶରେ ପରିପୂର୍ଣ୍ଣ ଏହି କୁଞ୍ଜଗୃହରେ ମାଧବ ରହିଛନ୍ତି । ତୁ ତାଙ୍କ ନିକଟକୁ ଯାଇ ସୁରତ ଲୀଳାରେ ବିଳାସ କର । ବିଶେଷତଃ ମାଧବଙ୍କ ସହିତ ରତିକେଳିରେ ମାତିବାକୁ ତୋର ଯେଉଁ ଆଗ୍ରହ ଜାତହୋଇଛି, ତା' ଫଳରେ ତୋ' ମୁଖମଣ୍ଡଳରେ ହସ ଉକୁଟି ଉଠିଛି ।

**ନବଭବଦଶୋକଦଳଶୟନସାରେ**
**ପ୍ରବିଶ ରାଧେ ମାଧବସମୀପମିହ,**
**ବିଳସ କୁଚ଼କଳଶତରଳହାରେ । (ଖ)**

**ପଦ୍ୟ –** ନବୀନ ଅଶୋକଦଳ କୋମଳ ଶେଯରେ ।
ହରି ତୁଲେ କ୍ରୀଡ଼ା କର ମନ ସରାଗରେ ।।
ଏ ତୋହର ଘନକୁଚ଼କୁମ୍ଭ ଉରୁ ପର ।
ଶୋଭିତ ତରଳ ଅତି ମୁକୁତାର ହାର ।।

**ଗଦ୍ୟ –** ହେ ରାଧିକେ ! ତୁ ମାଧବଙ୍କ ନିକଟରେ ପ୍ରବେଶ କରି ନବ-ଅଶୋକଦଳରେ ନିର୍ମିତ କୋମଳ ଶେଯରେ ଶୟନ କରିବା ସଙ୍ଗେ ସଙ୍ଗେ ରତିରସରେ ବିଳାସ କର । ତୋର ଉନ୍ନତ ପୟୋଧର ରୂପକ କଳଶ ଉପରେ ଗଳାରେ ଶୋଭିତ ମଣିହାର ଚଞ୍ଚଳଗତିରେ ଦୋହଲି ଉଠୁଛି । ଏଥିରୁ ତୋର ରମଣଇଚ୍ଛା ବେଶ୍ ଜଣାପଡୁଛି । ତୁ ଆଉ ବିଳମ୍ବ ନକରି କୁଞ୍ଜଗୃହକୁ ପ୍ରବେଶକର ।

**କୁସୁମଚ଼ୟରଚିତଶୁଚିବାସଗେହେ,**
**ପ୍ରବିଶ ରାଧେ ମାଧବସମୀପମିହ,**
**ବିଳସ କୁସୁମସୁକୁମାରଦେହେ । (ଗ)**

**ପଦ୍ୟ –** ବିବିଧ କୁସୁମେ ହୋଇଅଛି ଆଚ୍ଛାଦନ । ତାରୁ ମନୋହର ଏହୁ ଲତାର ସଦନ ।।
କୃଷ୍ଣତୁଲେ ଏଥି କୁତୂକିନୀ ହୁଅ ସହି ! କୁସୁମହୁଁ ଅତି ସୁକୁମାର ତୋର ଦେହୀ ।।

**ଗଦ୍ୟ –** ନନାବିଧ ସୁବାସିତ କୁସୁମରେ ଏହି କେଳିକୁଞ୍ଜ ମଣ୍ଡିତ ହୋଇଛି । ତା' ଫଳରେ ଏହି ବେତସକୁଞ୍ଜ ଅତ୍ୟନ୍ତ ସୁରଭିତ ହୋଇଉଠିଛି । ହେ କୁସୁମତୁଲ୍ୟ ସୁକୁମାରଦେହୀ ରାଧିକେ, ତୁ ଏହି କୁଞ୍ଜସଦନକୁ ପ୍ରବେଶ କରି, ମାଧବଙ୍କ ସହିତ କେଳିରସରେ ନିମଜ୍ଜିତ ହୁଅ ।

**ଚଳମଳୟବନପବନସୁରଭିଶୀତେ,**
**ପ୍ରବିଶ ରାଧେ ମାଧବସମୀପମିହ,**
**ବିଳସ ରସରସିତଲଳିତଗୀତେ । (ଘ)**

**ପଦ୍ୟ–**ବହଇ ସୁଗନ୍ଧ ମନ୍ଦ ମଳୟ ମରୁତ । କର ରତିରଙ୍ଗ ସଖି ! ଘେନି ଯଦୁନାଥ ।।
ସୁସ୍ୱର ଲଳିତ ତୋର ଆଳାପିତ ବାଣୀ । ସନ୍ତୋଷ ହେଉ ମାଧବ ଶ୍ରବଣରେ ଶୁଣି ।।

**ଗଦ୍ୟ –** ଶୃଙ୍ଗାରରସରେ ନିମଜ୍ଜିତ ହୋଇ ମଧୁମୟ ଲଳିତ ଗୀତ ଗାନରେ ତୁ ଆତ୍ମବିଭୋର ହୋଇଉଠିଛୁ । ମୃଦୁମନ୍ଦ ଗତିରେ ମଳୟବନରୁ ସୁଗନ୍ଧିତ ପବନ ବହିଆସି

ଶରୀରକୁ ଶୀତଳ କରୁଛି । ଏପରି ଏକ ମଧୁମୟ ପରିବେଶରେ ତୁ ମାଧବଙ୍କ କୁଞ୍ଜରେ ପ୍ରବେଶ କରି ତାଙ୍କ ସହିତ ରତିରସରେ ବିଳାସ କର ।

**ବିତତବହୁବଲ୍ଲିନବପଲ୍ଲବଘନେ,**
**ପ୍ରବିଶ ରାଧେ ମାଧବସମୀପମିହ,**
**ବିଳସ ଚିରମଳସପୀନଜଘନେ । (ଙ)**

ପଦ୍ୟ – ବିବିଧ ପ୍ରକାର ଲତା ପଲ୍ଲବ ଗହନ । ରଚିଅଛି ଶଯ୍ୟା ହରି ବିସ୍ତାର କରିଣ ॥
ଏ ତୋର ଘନଜଘନ ଅଳସେ ମନ୍ଥର । ସଫଳ ହୋଇ ବିହାର କରୁ ଦାମୋଦର ॥

ଗଦ୍ୟ – ହେ ରାଧିକେ ! ଏହି କୁଞ୍ଜସଦନ ନାନାବିଧ ଲତାଗୁଡ଼ିକର ନବପଲ୍ଲବରେ ବହଳ ଭାବରେ ଆଚ୍ଛାଦିତ ହୋଇଛି । ତୋର ପୃଥୁଳ ଜଘନଯୁଗଳ ମଧ୍ୟ ଅଳସରେ ଶିଥିଳିତ ହୋଇଗଲାଣି । ତୁ ଆଉ ବିଳମ୍ବ ନକରି କୁଞ୍ଜରେ ପ୍ରବେଶକରି ମାଧବଙ୍କ ସହିତ କେଳିରସରେ ନିମଜ୍ଜିତ ହୁଅ ।

**ମଧୁମୁଦିତମଧୁପକୁଳକଳିତରାବେ ।**
**ପ୍ରବିଶ ରାଧେ ! ମାଧବସମୀପମିହ,**
**ବିଳସ ମଦନଶରସରସଭାବେ । (ଚ)**

ପଦ୍ୟ – ପୁଷ୍ପମକରନ୍ଦପାନେ ଅତି ପ୍ରମୋଦିତ । କରୁଛନ୍ତି ଧ୍ୱନି ମଧୁକର ହୋଇ ମତ୍ତ ॥
ମନସିଜ ଶରରେ ପୀଡ଼ିତ ଅଙ୍ଗ ତୋର । କର ତୁ ବିନୋଦ ସଖି । ଘେନି ଯଦୁବୀର ॥

ଗଦ୍ୟ – ହେ ରାଧିକେ ! ସେହି ବେତସକୁଞ୍ଜକୁ, ପୁଷ୍ପମଧୁ ପାନ କରି ଭ୍ରମରମାନେ ଆନନ୍ଦବିଭୋର ଚିତ୍ତରେ, ଗୁଣୁଗୁଣୁ ରାବରେ ଝଙ୍କୃତ କରୁଛନ୍ତି । ତୁ ମଧ୍ୟ କାମଦେବଙ୍କ ପଞ୍ଚଶରରେ ପୀଡ଼ିତା ହୋଇ ରସଭାବରେ ସରସ ହୋଇଛୁ । ତେଣୁ ଶୀଘ୍ର କୁଞ୍ଜ ମଧ୍ୟରେ ତୋ'ରି ଅପେକ୍ଷାରେ ବସିଥିବା ମାଧବଙ୍କ ସମୀପକୁ ଯାଇ ତାଙ୍କ ସହିତ ବିଳାସରସରେ ମଜ୍ଜିଯାଅ ।

**ମଧୁରତରପିକନିକରନିନଦମୁଖରେ ।**
**ପ୍ରବିଶ ରାଧେ ! ମାଧବସମୀପମିହ,**
**ବିଳସ ଦଶନରୁଚିରୁଚିରଶିଖରେ । (ଛ)**

ପଦ୍ୟ – ଦେଖ ସଖି ! ସରସ ଏ ବସନ୍ତର କାଳ । ମୃଦୁ ସୁମଧୁର ଧ୍ୱନି କରନ୍ତି କୋକିଳ ॥
ଏସନ ସମୟେ ହରି ତୁଲେ କେଳି କର । ଡାଳିମ୍ବ ବୀଜ ଗଞ୍ଜିତ ଦନ୍ତପନ୍ତି ତୋର ॥

ଗଦ୍ୟ – ହେ ରାଧିକେ ! ମାଧବଙ୍କ ଲତାକୁଞ୍ଜ ପିକ (କୋକିଳ) ମାନଙ୍କ ମଧୁର କୂଜନରେ ଗୁଞ୍ଜରିତ ହୋଇଛି । ତୋର ଦାଡ଼ିମବୀଜ ସଦୃଶ ଦନ୍ତପଙ୍‌କ୍ତିରୁ ଯେଉଁ ମନୋରମ ଦ୍ୟୁତି ପ୍ରକାଶପାଉଛି, ସେଥିରେ କଳାମାଣିକ ଶ୍ରୀକୃଷ୍ଣ ଉଦ୍‌ଭାସିତ

ହୋଇଉଠୁଛନ୍ତି । ଅର୍ଥାତ୍, ରତିବିଳାସ ଲାଗି ଉତ୍ସୁକିନୀ ରାଧିକେ, ତୁମ ମୁଖରୁ ହସର ଫୁହାରା ଛୁଟି ମାଧବଙ୍କୁ ପ୍ରମୁଦିତ କଲାଣି । ତେଣୁ ତୁ ଆଉ ବିଳମ୍ବ ନକରି, ମାଧବଙ୍କ ନିକଟକୁ ଯାଇ ରତିବିଳାସରେ ବିଳସିନୀ ହୋଇଯାଅ ।

ବିହିତପଦ୍ମାବତୀସୁଖସମାଜେ,
କୁରୁ ମୁରାରେ ମଙ୍ଗଳଶତାନି,
ଭଣତି ଜୟଦେବକବିରାଜରାଜେ । (ଜ)

ପଦ୍ୟ—କବିରାଜରାଜ ଜୟଦେବ ହରିଭକ୍ତ । ରାଧାକୃଷ୍ଣଲୀଳା ରଚେ ପଦ୍ମାବତୀକାନ୍ତ ॥
ମୁର ନାମା ଦୈତ୍ୟ ନାଶି ନାମ ଯା' ମୁରାରି । ସେ ତାହାଙ୍କ ମଙ୍ଗଳ କରନ୍ତୁ ମୋଦ ଭରି ।

ଗଦ୍ୟ— କବିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଅଟନ୍ତି ଯେଉଁ ଜୟଦେବ କବି ସେ ପଦ୍ମାବତୀଙ୍କ ସୁଖ ବିଧାନ ପାଇଁ ଗୋବିନ୍ଦଙ୍କ ଗୀତ ଗାନ କରୁଛନ୍ତି । ହେ ମୁରାରେ ! ସେହି ଜୟଦେବଙ୍କର ଅଶେଷ ମଙ୍ଗଳ ବିଧାନ କର ।

ତ୍ୱାଂ ଚିତ୍ତେନ ଚିରଂ ବହନ୍ନୟମତିଶ୍ରାନ୍ତୋ ଭୃଶଂ ତାପିତଃ
କନ୍ଦର୍ପେଣ ଚ ପାତୁମିଚ୍ଛତି ସୁଧାସମ୍ବାଧବିମ୍ବାଧରମ୍ ।
ଅସ୍ୟାଙ୍କଂ ତଦଲଂକୁରୁ କ୍ଷଣମିହ ଭ୍ରୂକ୍ଷେପଲକ୍ଷ୍ମୀଲବ—
କ୍ରୀତେ ଦାସ ଇବୋପସେବିତପଦାମ୍ଭୋଜେ କୁତଃ ସମ୍ଭ୍ରମଃ । ୬ ।

ପଦ୍ୟ—ଚିରକାଳୁଁ ଧରି ତୋତେ ଚିତ୍ତରେ ମୁରାରି । ଅତି ଶ୍ରମ ପାଇଣ ଅଛଇ ତାପ ଧରି ॥
କନ୍ଦର୍ପବାଧାଏ ଇଚ୍ଛା କରିଛି ମନର । ତୋ' ବିମ୍ବାଧରୁ ପିଇବ ସୁଧାମଧୁଝର ॥
ଏ ତୋହର ସୁବାସିତ ରୁଚିର ଉତ୍ସଙ୍ଗ । କ୍ଷଣେ ମାତ୍ର କର ସଖି ! ହରି କୋଳେ ସଙ୍ଗ ॥
ସୁରଙ୍ଗ ଭ୍ରୂଲତା ଚାରୁ ଅପାଙ୍ଗରେ ଚାହିଁ । ଦାସ ଯେହ୍ନେ ପାଦବାସ କର ତା'ରେ ତ୍ରାହି ॥
ଯହୁଁ ସେ କେଶବ ତବ ଚରଣ ଅମ୍ବୁଜେ । ସେବିତ ହୋଇଛି ସେହୁ ତ୍ରିଭୁବନରାଜେ ॥
କୋପ ତେଜି ଅନୁରାଗ କରସି ସୁନ୍ଦରି ! ଦୋଷ ଗୁଣ ନଧର ତା' ଯେହ୍ନୁ ସ୍ନେହକାରୀ ॥

ଗଦ୍ୟ — ହେ ରାଧିକେ ! ତୋ' ବିଷୟରେ ସଦାସର୍ବଦା ହୃଦୟରେ ଚିନ୍ତା ଓ ମଦନ ଶରରେ ବାରମ୍ବାର ପୀଡ଼ିତ ଶ୍ରୀକୃଷ୍ଣ ଅତ୍ୟନ୍ତ ପରିଶ୍ରାନ୍ତ ହୋଇ, ସୁଧାରସ ପରିପୂର୍ଣ୍ଣ ତୋର ବିମ୍ବାଧରରୁ ମଧୁପାନ ଲାଗି ବ୍ୟାକୁଳ ହୋଇଛନ୍ତି । ତୁ ଆଉ ବିଳମ୍ବ ନକରି ତାଙ୍କ କୋଳ ମଣ୍ଡନ କରି ଅଭିଳାଷ ପୂର୍ଣ୍ଣକର । ଆଖିର ଇଶାରା ମାତ୍ରକେ ଯେ କ୍ରୀତଦାସ ପରି ତୋ' ପାଦପଙ୍କଜରେ ସେବା କରିବାକୁ ପ୍ରସ୍ତୁତ ଅଛନ୍ତି, ତାଙ୍କ ପରି ଅନୁଗତଜନଙ୍କଠାରେ ସଙ୍କୋଚ଼ କରିବାରେ ଲାଭ କ'ଣ ? ଅର୍ଥାତ୍ ହେ ବିଳାସିନି ! ତୁ ସଙ୍କୋଚ଼ ତ୍ୟାଗ କରି ଶ୍ରୀକୃଷ୍ଣ କୋଳରେ ବସି ତାଙ୍କ ଅଭିଳାଷ ପୂରଣକର ।

ସା ସସାଧ୍ୱସସାନନ୍ଦଂ ଗୋବିନ୍ଦେ ଲୋଳଲୋଚ଼ନା
ସିଞ୍ଜାନମଞ୍ଜୁମଞ୍ଜୀରଂ ପ୍ରବିବେଶ ନିବେଶନମ୍ । ୭ ।

ପଦ୍ୟ – ଶୁଣିଣ ରାଧିକା ସହଚରୀର ବଚନ । ସସ୍ନେହ ସଲଜ୍ଜଭରେ ଘେନିଅଛି ମନ ।।
ସାନନ୍ଦେ ଆଲୋକ ନେତ୍ରେ ଅପାଙ୍ଗରେ ଢାଳି ।
ଗୋବିନ୍ଦ ବଦନ ଆଲୋକନେ ନବବାଳୀ ।।
ରୁଣୁଝୁଣୁ ନୂପୁର ବଜାଇ ସୀମନ୍ତିନୀ । ପଶିଲା କୁଞ୍ଜସଦନେ ମରାଳଗମନୀ ।।

ଗଦ୍ୟ– ସଖୀ ମୁଖରୁ ଏପରି ଉତ୍ସାହଜନକ ବାଣୀ ଶୁଣି ଆନନ୍ଦରେ ଅଧୀରା ହୋଇଥିବା ଶ୍ରୀରାଧା ପାଦର ନୂପୁରକୁ ମୃଦୁମନ୍ଦ ଧ୍ୱନିରେ ଅନୁରଣିତ କରାଇ ଶ୍ରୀକୃଷ୍ଣଙ୍କ ଆଡ଼କୁ ଚଞ୍ଚଳ ଲୋଚନରେ ଚାହିଁ ଲତାଗୃହ ମଧ୍ୟକୁ ପ୍ରବେଶକଲେ ।

*[ ବରାଡ଼ୀ ରାଗେଣ ଗୀୟତେ (ଯତିତାଳାଭ୍ୟାଂ ଗୀୟତେ) । (ଗୀତ – ୩) ]*

**ରାଧାବଦନବିଲୋକନବିକସିତବିବିଧବିକାରବିଭଙ୍ଗମ୍**
**ଜଳନିଧିମିବ ବିଧୁମଣ୍ଡଳଦର୍ଶନତରଳିତତୁଙ୍ଗତରଙ୍ଗମ୍ ।**
**ହରିମେକରସଂ ଚିରମଭିଳଷିତବିଳାସମ୍**
**ସା ଦଦର୍ଶ ଗୁରୁହର୍ଷବଶମ୍ୱଦବଦନମନଙ୍ଗନିକାଶମ୍ । (କ) ଧ୍ରୁବମ୍ ।**

ପଦ୍ୟ – ଏଥୁ ଅନନ୍ତରେ ଶୁଣ ହେ ସୁଜନ । ହରି ଚାହିଁଲେ ରାଧାର ବଦନ ।।
ଦେଖି ବିବିଧ ଦୁଃଖ ପରିହରି । ମନ ପ୍ରସନ୍ନ ଅତି ମଧୁହାରୀ ।।
ଚନ୍ଦ୍ରମଣ୍ଡଳ ଦର୍ଶନେ ଯେସନ । ସିନ୍ଧୁ ପ୍ରମୋଦ ଲଭଇ ତେସନ ।।
ଯହୁଁ ବହୁତ କାଳରୁ ବିଚ୍ଛେଦ । ହରି ଏକରସ କେଳି ବିନୋଦ ।।
ତାଙ୍କୁ ଚାହିଁ ହୁଏ ଅତି ହରଷ । ମୁଖେ କୋଟି ମଦନ ପରକାଶ ।।

ଗଦ୍ୟ – ପୂର୍ଣ୍ଣିମାର ଚନ୍ଦ୍ରମଣ୍ଡଳକୁ ଦେଖି ପ୍ରବଳ ତଥା ତୁଙ୍ଗ ତରଙ୍ଗମାଳାରେ ହର୍ଷ ପ୍ରକଟ କରୁଥିବା ସମୁଦ୍ର ସଦୃଶ ଶ୍ରୀକୃଷ୍ଣଙ୍କୁ କୁଞ୍ଜ ସଦନରେ ଶ୍ରୀରାଧା ଅବଲୋକନ କରିଥିଲେ । ସେତେବେଳେ ଶ୍ରୀରାଧାଙ୍କ ମୁଖଚନ୍ଦ୍ରମାର ଦର୍ଶନରେ ଶ୍ରୀକୃଷ୍ଣଙ୍କ ମନରେ ନାନା ପ୍ରକାର କାମବିକାର ଜାତହୋଇଥିଲା । ସେ ଶୃଙ୍ଗାରରସର ମୂର୍ତ୍ତିମାନ୍ ପ୍ରତୀକରୂପେ ପରିଲକ୍ଷିତ ହେଉଥିଲେ । ବହୁକାଳରୁ ଶ୍ରୀରାଧାଙ୍କ ସହିତ କେଳିରସରେ ନିମଜ୍ଜିତ ହେବାକୁ ସେ ଇଚ୍ଛାକରୁଥିବାରୁ ସେହି ଆଶା ପରିପୂର୍ଣ୍ଣ ହେବାର ନିଶ୍ଚିତତା ଜାଣି ତାଙ୍କ ମନରେ ଅପାର ହର୍ଷ ଜାତହୋଇଥିଲା ଏବଂ ତାଙ୍କ ମୁଖମଣ୍ଡଳରେ କାମଭାବନା ସ୍ପଷ୍ଟଭାବରେ ପରିସ୍ଫୁଟ ହେଉଥିଲା ।

**ହାରମମଳତରତାରମୁରସି ଦଧତଂ ପରିଲମ୍ୱ୍ୟ ବିଦୂରମ୍**
**ସ୍ଫୁଟତରଫେନକଦମ୍ୱକରମ୍ବିତମିବ ଯମୁନାଜଳପୂରମ୍ । (ଖ)**

ପଦ୍ୟ – ହାର ମୁକୁତା ତା'ର ସୁତରଳ । ଲମ୍ୱି ପଡ଼ିଅଛି ଉରମଣ୍ଡଳ ।।
କି ଏ କାଳିନ୍ଦୀ ନଦୀର ପ୍ରବାହ । ଭାସମାନ ତଥି ଫେନ ସମୂହ ।।

ଗଦ୍ୟ – ସେ ସମୟରେ ଶ୍ରୀକୃଷ୍ଣଙ୍କ ବକ୍ଷଦେଶରେ ଅତ୍ୟନ୍ତ ବିଶୁଦ୍ଧ ତଥା ନିର୍ମଳ ମୁକ୍ତାହାର ଶୋଭାପାଉଥିଲା । ସେ ଦୃଶ୍ୟ ଦେଖିଲେ ମନେହେଉଥିଲା ସତେ ଯେପରି ନୀଳବର୍ଣ୍ଣ ଯମୁନା ଜଳରେ ଅତି ଧବଳ ଫେନସମୂହ ଭାସମାନ ହେଉଛି । ଏହିପରି ଭାବରେ ମୁକ୍ତାହାରଦ୍ୱାରା ପରିଶୋଭିତ ଶ୍ରୀକୃଷ୍ଣଙ୍କୁ ରସବତୀ ରାଧା ଦର୍ଶନ କରିଥିଲେ ।

ଶ୍ୟାମଳମୃଦୁଳକଳେବରମଣ୍ଡଳମଧିଗତଗୌରଦୁକୂଳମ୍
ନୀଳନଳିନମିବ ପୀତପରାଗପଟଳଭରବଳୟିତମୂଳମ୍ । (ଗ)

ପଦ୍ୟ – ଶ୍ୟାମ କୋମଳ କାନ୍ତି କଳେବର । ମଧ୍ୟେ ବଳିତ ହରିତ ଅମ୍ବର ।।
କି ଏ ବିକଶିତ ନୀଳକମଳ । ପୀତ ପରାଗେ ଆବେଷ୍ଟିତ ମୂଳ ।।

ଗଦ୍ୟ – ଶ୍ରୀକୃଷ୍ଣ ନିଜର ନୀଳମେଘ ସଦୃଶ ଶ୍ୟାମଳ କଳେବରରେ ପୀତାମ୍ବର ଧାରଣ କରିଥିଲେ । ସେ ଦୃଶ୍ୟ ଦେଖିଲେ ମନେହେଉଥିଲା ସତେ ଯେପରି, ନୀଳକମଳ ମୂଳରେ ପୀତବର୍ଣ୍ଣ ପୁଷ୍ପରେଣୁ ସମୂହ ବଳୟ ଆକାରରେ ପରିଶୋଭିତ ହେଉଛି କି ? ଏ ପ୍ରକାର ଅପରୂପ ଶୋଭା-ବିମଣ୍ଡିତ ଶ୍ରୀକୃଷ୍ଣଙ୍କୁ ରସବତୀ ରାଧିକା କୁଞ୍ଜସଦନରେ ଅବଲୋକନ କରିଥିଲେ ।

ତରଳଦୃଗଞ୍ଚଳଚଳନମନୋହରବଦନଜନିତରତିରାଗମ୍
ସ୍ଫୁଟକମଳୋଦରଖେଳିତଖଞ୍ଜନଯୁଗମିବ ଶରଦି ତଡ଼ାଗମ୍ । (ଘ)

ପଦ୍ୟ – ଅତି ତରଳ ଲୋଚନ ଚଞ୍ଚଳ । ଅନୁରାଗ ଶୋଭି ମୁଖମଣ୍ଡଳ ।।
ଯେହ୍ନେ ନବବିକଚ ନଳିନରେ । ଖେଳେ ଖଞ୍ଜନଯୁଗ ସରୋବରେ ।।

ଗଦ୍ୟ – ଶ୍ରୀକୃଷ୍ଣଙ୍କର ମୁଖମଣ୍ଡଳରେ ଚଞ୍ଚଳ ନୟନ ଯୁଗଳଙ୍କୁ ଦେଖି ଯାହାଙ୍କର ମନରେ ମଦନ ବିକାର ଜାତହୋଇଥିଲା, ଏମନ୍ତ ଯେ ଶ୍ରୀରାଧା, ସେ କୃଷ୍ଣଚନ୍ଦ୍ରଙ୍କୁ ଅବଲୋକନ କରିଥିଲେ । ସେ ଶୋଭା ସନ୍ଦର୍ଶନ କରି ମନେହେଉଥିଲା ସତେ ଯେପରି, ଶରତ୍‌କାଳୀନ ନିର୍ମଳଜଳ-ପରିପୂର୍ଣ୍ଣ ପୁଷ୍କରିଣୀ ମଧ୍ୟଗତ ପ୍ରସ୍ଫୁଟିତ କମଳ ପାର୍ଶ୍ୱରେ ଦୁଇଟି ଖଞ୍ଜନ ପକ୍ଷୀ ଖେଳୁଛନ୍ତି କି ?

ବଦନକମଳପରିଶୀଳନମିଳିତମିହିରସମକୁଣ୍ଡଳଶୋଭମ୍
ସ୍ମିତରୁଚିରୁଚିରସମୁଲ୍ଲସିତାଧରପଲ୍ଲବକୃତରତିଲୋଭମ୍ । (ଙ)

ପଦ୍ୟ – ମୁଖପଦ୍ମ ହୋଇଅଛି ପ୍ରଫୁଲ୍ଲ । କି ଏ କୁଣ୍ଡଳ ପ୍ରଭାକର ତୁଲ୍ୟ ।।
ଦରହସିତ ମୁଖ ମନୋହର । ରତିଲାଳସେ ଉଲ୍ଲସିତାଧର ।।
ଏମନ୍ତ ଶ୍ରୀକୃଷ୍ଣେ କୁଞ୍ଜରେ ଦେଖି । ପିଛାଡ଼ି ନପାରେ ରାଧିକା ଆଖି ।।

ଗଦ୍ୟ – ଶ୍ରୀକୃଷ୍ଣଙ୍କ ବଦନକମଳଙ୍କୁ ପରିସ୍ଫୁଟ କରିବାରେ କର୍ଣ୍ଣର କୁଣ୍ଡଳଯୁଗଳର ଆଭା ସୂର୍ଯ୍ୟକିରଣ ପରି ପ୍ରତିଭାତ ହେଉଥିଲା । ସେହି ସୂର୍ଯ୍ୟକିରଣ ତୁଲ୍ୟ କନକକୁଣ୍ଡଳର

ଆଭାରେ ଶ୍ରୀକୃଷ୍ଣଙ୍କର ମୁଖମଣ୍ଡଳ ପରିଶୋଭିତ ହେଉଥିଲା । ପ୍ରଣୟିନୀଙ୍କ ଅଧରପଲ୍ଲବକୁ ଚୁମ୍ବନ କରିବା ପାଇଁ ଯାହାଙ୍କର ମୁଖମଣ୍ଡଳରେ ସ୍ନିଗ୍ଧ ତଥା ରୁଚିର ହାସ୍ୟରେଖା ପ୍ରକଟିତ ହୋଇଛି ଏବଂ ଯେଉଁ ଅଧରପଲ୍ଲବକୁ ଦେଖି ଶ୍ରୀରାଧାଙ୍କ ମନରେ ରତିଲାଳସା ଉକୁଟି ଉଠିଛି; ସେ ପ୍ରକାର ଶୋଭାମୟ କୃଷ୍ଣଚନ୍ଦ୍ରଙ୍କୁ ଶ୍ରୀରାଧା କୁଞ୍ଜସଦନରେ ଦେଖି ଅତ୍ୟନ୍ତ ପ୍ରଲୁବ୍ଧ ହୋଇଉଠିଲେ ।

**ଶଶିକିରଣଚ୍ଛୁରିତୋଦରଜଳଧରସୁନ୍ଦରକୁସୁମସୁକେଶମ୍**
**ତିମିରୋଦିତବିଧୁମଣ୍ଡଳନିର୍ମଳମଳୟଜତିଳକନିବେଶମ୍ । (ଚ)**

ପଦ୍ୟ – ଚଞ୍ଚଳ କୁଟିଳ କେଶ ସୁଷମ । ତଥି ଖଚିତ ବିବିଧ କୁସୁମ ॥
କି ଏ ନୀଳଜଳଦ ମଧ୍ୟରେଣ । ଶୋଭିତ ଯେହ୍ନେ ଶଶାଙ୍କ କିରଣ ॥
ଭାଲେ ଚନ୍ଦନ ତିଳକ ଅଙ୍କିତ । ଯେହ୍ନେ ଅନ୍ଧାରେ ଉଦେ ନିଶାକାନ୍ତ ॥

ଗଦ୍ୟ – ଶ୍ରୀକୃଷ୍ଣଙ୍କ ଶିରଦେଶର କେଶପାଶ ନାନାରଙ୍ଗର ପୁଷ୍ପସ୍ତବକରେ ପରିଶୋଭିତ ହେଉଥିଲା । ତାକୁ ଦେଖିଲେ ମନେହେଉଥିଲା ସତେ ଯେପରି, ଘନନୀଳବର୍ଣ୍ଣ ମେଘଖଣ୍ଡ ମଧ୍ୟରେ ଚନ୍ଦ୍ରକିରଣ ବିଚ୍ଛୁରିତ ହେଉଛି କି ? ଆହୁରି ମଧ୍ୟ ଶ୍ରୀକୃଷ୍ଣଙ୍କ ଲଲାଟପଟରେ ଅନ୍ଧକାର ଭେଦକରି ଉଦିତ ଚନ୍ଦ୍ରମଣ୍ଡଳ ସଦୃଶ, ମଳୟଜ ଚନ୍ଦନର ବିନ୍ଦୁ ପରିଶୋଭିତ ହେଉଥିଲା । ଏମନ୍ତ ଶୋଭାଶାଳୀ ଶ୍ରୀକୃଷ୍ଣଙ୍କୁ କୁଞ୍ଜ ସଦନରେ ଶ୍ରୀରାଧା ଅବଲୋକନ କରିଥିଲେ ।

**ବିପୁଳପୁଳକଭରଦନ୍ତୁରିତଂ ରତିକେଳିକଳାଭିରଧୀରମ୍**
**ମଣିଗଣକିରଣସମୂହସମୁଜ୍ଜ୍ୱଳଭୂଷଣସୁଭଗଶରୀରମ୍ । (ଛ)**

ପଦ୍ୟ – ଅତି ପୁଲକ ସାତ୍ତ୍ୱିକ ବିକାର । ତହୁଁ ହୋଇଛି ରୋମାଞ୍ଚ ଶରୀର ॥
ରତିରସକଳା ମନେ ସୁମରି । ଚିତ୍ତଚଞ୍ଚଳ କି କାମଲହରୀ ॥
ମଣିଗଣ କିରଣ ନବଜ୍ୟୋତି । ତନୁଭୂଷିତ ମୋହନ ମୂରତି ॥
କୋଟି କୋଟି ମନମଥ ଲାବଣ୍ୟ । ଏକ କଳାକୁ ନୋହିବ ସମାନ ॥

ଗଦ୍ୟ – ଅତ୍ୟନ୍ତ ଆନନ୍ଦିତ ହୋଇଥିବାରୁ ଯାହାଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଛି, ପ୍ରାଣପ୍ରିୟା ପ୍ରଣୟିନୀ ସହିତ ରତିକେଳିକଳାରେ ନିମଜ୍ଜିତ ହେବାପାଇଁ ଯେ ଅଧୀର ହୋଇଉଠିଛନ୍ତି, ନାନାବିଧ ମଣିରତ୍ନ ଧାରଣ କରିଥିବାରୁ ଯାହାଙ୍କର ସୁନ୍ଦର ଶରୀର ଉଦ୍ଦୀପିତ ହୋଇଛି, ଏମନ୍ତ ଶୋଭାଶାଳୀ ଶ୍ରୀକୃଷ୍ଣଙ୍କୁ ରାଧିକା କୁଞ୍ଜସଦନରେ ଅବଲୋକନ କରିଥିଲେ ।

**ଶ୍ରୀଜୟଦେବଭଣିତବିଭବଦ୍ୱିଗୁଣୀକୃତଭୂଷଣଭାରମ୍**
**ପ୍ରଣମତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟସାରମ୍ । (ଜ)**

ପଦ୍ୟ – ଜୟଦେବ କବି ଏହା ରଚିତ । ରାଧାକୃଷ୍ଣ ରୂପ ଦେଖି ସୁଚିତ୍ତ ।।
କୃଷ୍ଣଚନ୍ଦ୍ର ମୁଖ ଯେଉଁ ସ୍ୱରୂପ । ସନ୍ଥ ହୃଦେ ସେହି ଉଦେ ପ୍ରଦୀପ ।।

ଗଦ୍ୟ – ହେ ଭକ୍ତ ତଥା ରସିକଜନତା, ପୁଣ୍ୟ ଉଦୟର ସାରଭୂତ, ଅଥବା ପୁଣ୍ୟ ଉଦୟର ଶ୍ରେଷ୍ଠଧନ, ଶ୍ରୀଜୟଦେବଙ୍କ ବାଗ୍‌ବିଳାସରେ ଯାହାଙ୍କର ଶରୀରଘଟିତ ଅଳଙ୍କାର ସମୂହର ଶୋଭା ଦ୍ୱିଗୁଣିତ ହୋଇଛି, ଏମନ୍ତ ଶୋଭାମୟ ଯେଉଁ ଶ୍ରୀକୃଷ୍ଣ, ତାହାଙ୍କ ମନୋଜ୍ଞ କାନ୍ତିକୁ ବହୁକାଳ ପର୍ଯ୍ୟନ୍ତ ହୃଦୟରେ ଧାରଣକରି ତାଙ୍କ ଶ୍ରୀଚରଣରେ ପ୍ରଣାମକର ।

ଅତିକ୍ରମ୍ୟାପାଙ୍ଗଂ ଶ୍ରବଣପଥପର୍ଯ୍ୟନ୍ତଗମନ –
ପ୍ରୟାସେନେବାକ୍ଷ୍ଣୋରମଳତରତାରଂ ପତିତୟୋଃ ।
ଇଦାନିଂ ରାଧାୟାଃ ପ୍ରିୟତମସମାଲୋକସମୟେ
ପପାତ ସ୍ୱେଦାମ୍ବୁପ୍ରସର ଇବ ହର୍ଷାଶ୍ରୁନିକରଃ । ୮ ।

ପଦ୍ୟ – ଯହୁଁ କିଞ୍ଚିତେ ଚାହିଁଲା ଅବଳା । ଚିତ୍ତ ଶାନ୍ତି କି କେବେ ହେ ନଗଲା ।।
ଅପାଙ୍ଗେ ଚାହାନ୍ତେ ବରସୁନ୍ଦରୀ । ଚକ୍ଷୁ ଗଲା ଶ୍ରବଣ ପଥେ ସରି ।।
କଷ୍ଟେ ଅତ୍ୟନ୍ତ ଲୋଚନ ତରଳ । ଆନନ୍ଦରେ ପଡ଼ଇ ଅଶ୍ରୁଜଳ ।।

ଗଦ୍ୟ – କୁଞ୍ଜ ସଦନରେ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ଶ୍ରୀରାଧାଙ୍କ ନୟନରେ ଆନନ୍ଦାଶ୍ରୁ ନେତ୍ରପ୍ରାନ୍ତଭାଗ (ଅପାଙ୍ଗ)କୁ ଅତିକ୍ରମ କରି କର୍ଣ୍ଣପର୍ଯ୍ୟନ୍ତ ବହିଯାଇ ଝାଳ ବହିଲା ପରି ତଳେ ପଡ଼ିଲା । ଅର୍ଥାତ୍ ବିରହିଣୀ ନାୟିକା ରାଧା ମନୋମତ କାନ୍ତ ଶ୍ରୀକୃଷ୍ଣଙ୍କୁ ଏକାକିନୀ ଦେଖିବାମାତ୍ରେ ଅତିଶୟ ହର୍ଷରେ ଚକ୍ଷୁରୁ କର୍ଣ୍ଣମୂଳ ଦେଇ ଆନନ୍ଦାଶ୍ରୁ ଝରାଇବାକୁ ଲାଗିଲେ ।

ଭଜନ୍ତ୍ୟାସ୍ତଳ୍ପାନ୍ତଂ କୃତକପଟକଣ୍ଡୂତିପିହିତ –
ସ୍ମିତଂ ଯାତେ ଗେହାଦ୍‌ବହିରବହିତାଳୀପରିଜନେ ।
ପ୍ରିୟାସ୍ୟଂ ପଶ୍ୟନ୍ତ୍ୟାଃ ସ୍ମରଶରସମାକୂତସୁଭଗଂ
ସଲଜ୍ଜା ଲଜ୍ଜାପି ବ୍ୟଗମଦିବ ଦୂରଂ ମୃଗଦୃଶଃ । ୯ ।

ପଦ୍ୟ – କାନ୍ତ ବଦନ ଦେଖି କାମେ ମତ୍ତ । ତନୁ ପରେ ସ୍ୱେଦବିନ୍ଦୁ ଅଙ୍କିତ ।।
ଯହୁଁ ରାଧାର ଏସନ ବିଚାର । ପ୍ରିୟସଖୀଜନ ହେଲେ ବାହାର ।।
ଦରହାସ ଭାବ ହୋଇ ସକଳ । କପଟେ କଣ୍ଡୁ କରି ଶ୍ରବଣର ।।
ଲଜ୍ଜା ନିବାରି କୁରଙ୍ଗ ନୟନୀ । ଯେହ୍ନେ ମାତଙ୍ଗ ଅଙ୍କୁଶ ନ ମାନି ।।
କୃଷ୍ଣ ସ୍ନେହଭରେ ତହୁଁ ରସିଲା । ଯାଇ ଶଯ୍ୟାର ପ୍ରାନ୍ତରେ ବସିଲା ।।

ଗଦ୍ୟ – ଶ୍ରୀକୃଷ୍ଣଙ୍କ ଦ୍ୱାରା ନିର୍ମିତ ନବପଲ୍ଲବ ଶେଯର ପ୍ରାନ୍ତଭାଗରେ ଉପସ୍ଥିତ ହୁଅନ୍ତେ, ମୃଗନୟନୀ ଶ୍ରୀରାଧାଙ୍କୁ ତ୍ୟାଗକରି, କାନ କୁଣ୍ଡାଇ ହେବାର ଛଳନା କରି ସଖୀଗଣ କୁଞ୍ଜସଦନରୁ ହସି ହସି ବାହାରକୁ ଚାଲିଗଲେ । ସେତିକିବେଳେ କାମଶରରେ ପୀଡ଼ିତ ନିଜ ପ୍ରଣୟୀ ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ଶ୍ରୀରାଧାଙ୍କଠାରୁ ଲଜ୍ଜା ସଲଜ୍ଜ ହୋଇ ଦୂରକୁ ପଳାଇଲା । ଅର୍ଥାତ୍ ସଖୀମାନେ ଅପସରିଯାଆନ୍ତେ ଶ୍ରୀରାଧା ଲଜ୍ଜା ତ୍ୟାଗକରି ସପ୍ରେମଦୃଷ୍ଟିରେ ପ୍ରାଣପ୍ରିୟଙ୍କ ସହିତ ମିଳିତ ହେବାଲାଗି ବ୍ୟାକୁଳ ହୋଇଉଠିଲେ ।

**ଇତିଶ୍ରୀ ଉତ୍କଳୀୟକବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ରାଧିକାମିଳନେ ସାନନ୍ଦଦାମୋଦର ନାମ ଏକାଦଶଃ ସର୍ଗଃ ।** *

□□□

* ରସିକପ୍ରିୟା ଓ ରସମଞ୍ଜରୀ ଟୀକା ସମନ୍ୱିତ ଗୀତଗୋବିନ୍ଦରେ ପ୍ରସ୍ତୁତ ପାଠରେ ଗୃହୀତ ନବମ ଶ୍ଲୋକ ପରେ ଆଉ ତିନୋଟି ଶ୍ଲୋକ ଥିବାର ପରିଲକ୍ଷିତ ହୁଏ । ସେ ଶ୍ଲୋକଗୁଡ଼ିକ ଉତ୍କଳରେ ରଚିତ ସର୍ବାଙ୍ଗସୁନ୍ଦରୀ ଓ ଶ୍ରୁତିରଞ୍ଜନୀ ଟୀକାରେ ମିଳେନାହିଁ ।

## ଦ୍ୱାଦଶସର୍ଗ

ଗତବତୀ ସଖୀବୃନ୍ଦେଽମନ୍ଦତ୍ରପାଭରନିର୍ଭର-
ସ୍ମରଶରବଶାକୂତସ୍ଫୀତସ୍ମିତସ୍ନପିତାଧରମ୍ ।
ସରସମନସଂ ଦୃଷ୍ଟ୍ୱା ରାଧାଂ ମୁହୁର୍ନବପଲ୍ଲବ-
ପ୍ରସରଶୟନେ ନିକ୍ଷିପ୍ତାକ୍ଷୀମୁବାଚ ହରିଃ ପ୍ରିୟାମ୍ । ୧ ।

ପଦ୍ୟ – ସଖୀମାନେ ଯାଆନ୍ତେ ଦୂର ହୋଇ । ମଦନଶରେ ଅତି ପୀଡ଼ା ପାଇ ।।
ମନସିଜ ଶରରେ ହୋଇ ବଶ । ଶୋଭା ଅଧରେ ମନ୍ଦ ମନ୍ଦ ହାସ ।।
ଅତି ହରଷେ ଅଳସ ଲୋଚନ । ଚାହେଁ କେଳିଶଯ୍ୟାକୁ ପୁଣ ପୁଣ ।।
ଦେଖି ବୋଲନ୍ତି ଜଗତ-ଜୀବନ । ପ୍ରିୟେ ଶୁଣ ଗୋ ମୋହର ବଚନ ।।

ଗଦ୍ୟ – ସଖୀମାନେ ଚାଲିଯିବା ପରେ ଅତ୍ୟନ୍ତ ଲଜ୍ଜା ତଥା ମଦନପରବଶ ହୋଇଥିବା ଏବଂ ଅଧରରେ ହାସ୍ୟରେଖା ଖେଳାଇଥିବା ରସବତୀ ରାଧାର ମନରେ ଶ୍ରୀକୃଷ୍ଣ ଅତିଶୟ ଆନନ୍ଦଭାବ ଲକ୍ଷ୍ୟକରିଥିଲେ । ତା'ପରେ ବାରମ୍ବାର ପ୍ରିୟବତୀ ରାଧିକାକୁ ନବପଲ୍ଲବରେ ନିର୍ମିତ ଶଯ୍ୟା ଆଡ଼କୁ ଚାହୁଁଥିବାର ଦେଖି ଶ୍ରୀକୃଷ୍ଣ ତାଙ୍କୁ କହିଲେ ।

*[ ରାମକେରୀ ରାଗେଣ ଗୀୟତେ ( ଏକତାଳାଭ୍ୟାଂ ଗୀୟତେ ) । (ଗୀତ-୧)*
*( ବିଭାସ ଓ ନାଦରାମକେରୀ ପାଠ ଥିବାର ମଧ ଦେଖାଯାଏ ।) ]*

କିଶଳୟଶୟନତଳେ କୁରୁ କାମିନି ଚରଣନଳିନବିନିବେଶମ୍
ତବ ପଦପଲ୍ଲବବୈରିପରାଭବମିଦମନୁଭବତୁ ସୁବେଶମ୍ ,
କ୍ଷଣମଧୁନା ନାରାୟଣ ମନୁଗତମନୁସର ରାଧିକେ ।। (କ) । ଧ୍ରୁବମ୍ ।

ପଦ୍ୟ – ନବ ପଲ୍ଲବ ଶଯ୍ୟାର ଉପର । ଦିଅ ଚରଣ ଯୁଗଳ ତୋହର ।।
ପଦ ସୁବେଶ କିଶଳୟ ରଙ୍ଗ । ଏହୁ କରିବ ବଇରୀ ବିଭଙ୍ଗ ।।
କ୍ଷଣେ ପ୍ରସନ୍ନ ହୁଅ ମୋରେ ସଖି । ତୋର ବିରହେ ହୋଇଅଛି ଦୁଃଖୀ ।।

ଗଦ୍ୟ – ହେ ରାଧିକେ ! ଉତ୍ତମ ରୂପେ ନବପଲ୍ଲବରେ ନିର୍ମିତ ଶେଯ ଉପରେ ତୁମେ ତୁମର ପାଦପଦ୍ମ ଯୁଗଳକୁ ସ୍ଥାପନକର । ସେହି ନବପଲ୍ଲବଗୁଡ଼ିକ କୋମଳତାରେ ତୁମ ପାଦ ସହିତ ସମାନ ହେବେ ବୋଲି ଯେଉଁ ସ୍ପର୍ଦ୍ଧା କରୁଥିଲେ, ସେମାନେ ଶତ୍ରୁ ପରାଭବ ପାଇଲା ପରି ଲଜ୍ଜା ଅନୁଭବ କରନ୍ତୁ । ହେ ସୁନ୍ଦରି ! ତୁମେ କ୍ଷଣକଲାଗି ତୁମର ଅନୁଗତ ତଥା ବଶୀଭୂତ ଶ୍ରୀକୃଷ୍ଣ ଯେ ମୁଁ, ମୋ' ପ୍ରତି ଅନୁକୂଳା ହୁଅ ।

କରକମଳେନ କରୋମି ଚରଣମହମାଗମିତାସି ବିଦୂରମ୍
କ୍ଷଣମୁପକୁରୁ ଶୟନୋପରି ମାମିବ ନୂପୁରମନୁଗତଶୂରମ୍ । (ଖ)

ପଦ୍ୟ – ତୋ' ଚରଣେ ନୂପୁର ଅତି ଚାରୁ । ଚାଲି ଅଇଲୁ ଅନେକ ଦୂରରୁ ॥
କ୍ଷଣେମାତ୍ର ଶୟନ କର ସହି ! କରକମଳେ ପାଦ ସମାର୍ଜ୍ଜଇ ॥
ଯେଣୁ ଅନୁଗତ ତୋର ନୂପୁର । ତା'ରେ ମୋ' ପରି ବାରେ କୃପାକର ॥

ଗଦ୍ୟ – ହେ ଚାରୁହାସିନୀ ପ୍ରିୟେ ! ତୁମେ ଅନେକ ଦୂର ପଥ ଅତିକ୍ରମ କରି ଆସିଛ । ତୁମ ପାଦର ପଥଶ୍ରମ ଦୂର କରିବା ପାଇଁ ମୁଁ ମୋର କରକମଳରେ ସେବାକରିବି । ବୀରପୁରୁଷ ପରି ତୁମର ଅନୁଗତ ଏହି ନୂପୁରକୁ ବାହାରକରି ଶେଯର ଏକ ପାର୍ଶ୍ୱରେ ଥୋଇଦିଅ । ତା' ଫଳରେ ତୁମ ପାଦସେବା କରିବାରେ ଆଉ କିଛି ହେଲେ ଅସୁବିଧା ରହିବନାହିଁ । ରତିକେଳି ସମୟରେ ସେ ମୁଖରିତ ହୋଇ ଯେଉଁ ବାଧା ଉପୁଜାଇବ ତାହା ମଧ୍ୟ ଦୂର ହୋଇଯିବ । ତୁମେ ଆଲିଙ୍ଗନ ଚୁମ୍ବନଦ୍ୱାରା ମୋର ଯେପରି ଉପକାର କରିବାକୁ ଆଗଭର ହୋଇଛ, ଠିକ୍ ସେହିପରି ତୁମର ଅନୁଗତ ନୂପୁର ପ୍ରତି ମଧ୍ୟ କୃପା ପ୍ରଦର୍ଶନ କର ।

ବଦନସୁଧାନିଧିଗଳିତମମୃତମିବ ରଚୟ ବଚନମନୁକୂଳମ୍
ବିରହମିବାପନୟାମି ପୟୋଧରରୋଧକମୁରସି ଦୁକୂଳମ୍ । (ଗ)

ପଦ୍ୟ – ତୋର ବଦନ ସୁଧାନିଧି ଜିଣି । ଝରେ ଅମୀୟରସ ସୁଧାବାଣୀ ॥
ମୋତେ କହ ବଚନ ଅନୁକୂଳ । ଚିର ବିରହୀ ଏ କୁଚଯୁଗଳ ॥
ଏହା ନିରୋଧ କରିଛି ଅମ୍ବର । କାଢ଼ି ପକାଇ କରିବଇଁ ଦୂର ॥

ଗଦ୍ୟ – ହେ ପ୍ରିୟେ, ତୁମେ ଆଉ ମୌନାବତୀ ହୋଇ ବସନାହିଁ । ଚନ୍ଦ୍ରରୁ ଅମୃତ ବିଗଳିତ ହେଲାପରି, ତୁମେ ତୁମ ଚାନ୍ଦବଦନରୁ ଅମୃତତୁଲ୍ୟ ବଚନ ପ୍ରକଟକର । ମୁଁ ତୁମ ପୟୋଧର ଯୁଗଳର ଆଲିଙ୍ଗନ ପାଇଁ ବ୍ୟାକୁଳ ହୋଇଉଠିଛି । ଦୀର୍ଘ ବିରହ ସମୟରେ ଥରେହେଲେ ସେ ସୁଯୋଗ ମିଳିନାହିଁ । ତେଣୁ ତୁମ ସ୍ତନମଣ୍ଡଳ ଓ ମୋ' ବକ୍ଷ ମଧ୍ୟରେ ବାଧକ ହୋଇ ରହିଥିବା ଏହି କୌଶେୟ ବସନକୁ ମୁଁ ତୁମ ବକ୍ଷଦେଶରୁ ଉଲାଗି କରିଦେଉଛି ।

ପ୍ରିୟପରିରମ୍ଭଣରଭସବଳିତମିବ ପୁଲକିତମତିଦୁରବାପମ୍
ମଦୁରସି କୁଚକଳସଂ ବିନିବେଶୟ ଶୋଷୟ ମନସିଜତାପମ୍ । (ଘ)

ପଦ୍ୟ – ପ୍ରିୟ ଆଲିଙ୍ଗନ କାଳେ ଯେମନ୍ତ । ରସ ଭରେଣ ଅତି ପୁଲକିତ ॥
ତୋ' ସ୍ତନ ଯୁଗ କଳଶ ସ୍ୱରୂପ । ଦେଇ ମୋ' ହୃଦେ ହର କାମ-ତାପ ॥

ଗଦ୍ୟ – ପ୍ରିୟତମଙ୍କ ଆଲିଙ୍ଗନ ନିମିତ୍ତ ଔତ୍ସୁକ୍ୟ ହେତୁରୁ ବିଶେଷ ଭାବରେ ଉନ୍ମୁଖ, ଅତିଶୟ ରୋମାଞ୍ଚିତ, ଅତ୍ୟନ୍ତ ଦୁର୍ଲ୍ଲଭ, ତୁମର ମଙ୍ଗଳ-କଳଶ ସଦୃଶ ସ୍ତନଯୁଗଳକୁ

ମୋ' ବକ୍ଷଦେଶରେ ସ୍ଥାପନକର । ତା' ଫଳରେ ଦୀର୍ଘ ବିରହ ଜନିତ ଯେଉଁ କନ୍ଦର୍ପ-ତାପ ମୋ' ହୃଦୟରେ ଜାତହୋଇଛି, ତାହା ଦୂରହୋଇଯିବ ।

**ଅଧରସୁଧାରସମୁପନୟ ଭାମିନି ! ଜୀବୟ ମୃତମିବ ଦାସମ୍**
**ତ୍ୱୟି ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ । (ଙ)**

ପଦ୍ୟ – ତୋର ବିରହ – ଅନଳ ପ୍ରଖର । ଦହୁ ଅଛଇ ମୋର କଳେବର ।।
ଅଧରୁ ସୁଧାପାନ ଦେଇ ସଖି ! ଦାସଜନ ଜୀବ ରଖ ସୁମୁଖି ।।

ଗଦ୍ୟ – ହେ ଭାମିନି ! ତୁମେ କୋପ ତ୍ୟାଗକରି, ତୁମ ବିରହରୂପକ ଅନଳରେ ଦଗ୍ଧହେଉଥିବା, ତୁମଠାରେ ଏକାଗ୍ରତାର ସହିତ ମନଦେଇଥିବା, ବିଳାସରହିତ ଏବଂ ମୃତବତ୍ ହୋଇଥିବା ଏହି ଚରଣପତିତ ସେବକଟିକୁ ଅଧରରୁ ସୁଧାପାନ ଦେଇ ପୁନର୍ଜୀବିତ କରାଅ ।

**ଶଶିମୁଖି ! ମୁଖରୟ ମଣିରସନାଗୁଣମନୁଗୁଣକଣ୍ଠନିନାଦମ୍**
**ଶ୍ରୁତିଯୁଗଳେ ପିକରୁତବିକଳେ ମମ ଶମୟ ଚିରାଦବସାଦମ୍ । (ଚ)**

ପଦ୍ୟ – ଶଶିବଦନି ! ଶୁଣ ମୋର ବାଣୀ । ତୋର ମଣିମେଖଳା ସୁକିଙ୍କିଣୀ ।।
କରୁ ମୁଖର ଧ୍ୱନି ଏ ନିରତ । ପିକଜିତ ଧ୍ୱନି ହେଉ ଉଦିତ ।।
ଚିରକାଳୁ ଶୁଣି ପିକ ବଚନ । ତାପ ପାଇଅଛି ମୋର ଶ୍ରବଣ ।।
ଯେତେ ଶୁଣିବ ରସନା ଶବଦ । ତେବେ ହରିବ ସକଳ ବିଷାଦ ।।

ଗଦ୍ୟ – ହେ ଚନ୍ଦ୍ରାନନେ ! ତୁମର ଜଘନଦେଶରେ ଥିବା ମଣିନିର୍ମିତ ଚନ୍ଦ୍ରହାରଟିକୁ ରୁଣୁଝୁଣୁ ବଜାଇବା ସଙ୍ଗେ ସଙ୍ଗେ ଅନୁରୂପ କଣ୍ଠସ୍ୱର ପ୍ରକଟ କରାଅ । ତୁମ ମଣିମୟ ଚନ୍ଦ୍ରହାରର ନିନାଦ ଓ ତୁମର ପ୍ରିୟବଚନ ଶୁଣିଲେ, ତୁମରି ବିରହ ଜନିତ ଯେଉଁ ଅବସାଦ ମୋ' ମନରେ ଜାତହୋଇଛି, ତାହା ଉପଶମ ହୋଇଯିବ । ଏହି ଦୀର୍ଘ ବିରହ ସମୟରେ କୋକିଳର କଳକୂଜନ ଶୁଣି ଶୁଣି ମୋ' କର୍ଣ୍ଣ ନିତାନ୍ତ ବିକଳ ହୋଇଉଠିଛି । ଏବେ ତୁମ ମଣିରସନାର ଶବ୍ଦ ତଥା କଣ୍ଠର କଳବଚନ ଶୁଣିଲେ, ମୋ' ମନରୁ ସକଳ ଅବସାଦ ଦୂରହୋଇଯିବ ।

**ମାମତିବିଫଳରୁଷା ବିକଳୀକୃତମବଲୋକିତମଧୁନେଦମ୍**
**ମୀଳିତ ଲଜ୍ଜିତମିବ ନୟନଂ ତବ ବିରମ ବିସୃଜ ରତିଖେଦମ୍ । (ଛ)**

ପଦ୍ୟ – କି ଦୋଷ ଘେନି ଏତେ କୋପ କର ? ଅତି ଆରତ ବିଷାଦୁ ଉଦ୍ଧର ।।
ମୋତେ ଚାହଁ ସରସିଜଲୋଚନି । ରତିଖେଦବିଷାଦ ବିମୋଚନୀ ।।

ଗଦ୍ୟ – ହେ ମାନମୟୀ ରାଧେ ! ତୁମେ ନିଷ୍ଫଳରୋଷ ତ୍ୟାଗକର । ମୋ' ଆଡ଼କୁ ସଦୟ ଦୃଷ୍ଟିରେ ଚାହଁ । ମୋ' ଆଖିରେ ଆଖି ମିଳାଇବା ପାଇଁ ଲଜ୍ଜା କରୁଥିବା ତୁମ ନୟନଯୁଗଳରୁ ଲଜ୍ଜାଭାବ ଦୂରକରିଦିଅ । ତୁମର ନିଷ୍ଫଳରୋଷ ହେତୁରୁ, ମୋ' ଚିତ୍ତ

ବିକଳ ହେଉଛି । ସୁରତକାଳୀନ ଖେଦ ବିଷୟରେ ଯେଉଁ ଚିନ୍ତା ତୁମ ମନରେ ଜାଗ୍ରତ ହୋଇଛି, ତାହାକୁ ଦୂରକରିଦିଅ ।

ଶ୍ରୀଜୟଦେବଭଣିତମିଦମନୁପଦନିଗଦିତମଧୁରିପୁମୋଦମ୍
ଜନୟତୁ ରସିକଜନେଷୁ ମନୋରମରତିରସଭାବବିନୋଦମ୍ । (ଜ)

ପଦ୍ୟ – ଶିରୀମନ୍ତ ଜୟଦେବ ବଖାଣି । ପ୍ରତିପଦରେ ରାଧାକୃଷ୍ଣ ବାଣୀ ।।
ରସିକ ଜନମାନଙ୍କର ଚିତ୍ତ । ରତିରସ କୃଷ୍ଣଭାବେ ଉଦିତ ।।
ଶ୍ରୀଗୀତଗୋବିନ୍ଦ ସରସବାଣୀ । ତୋଷ ହୁଅନ୍ତୁ ସନ୍ଥ ଜନେ ଶୁଣି ।।

× × × ×

ରସମୟ ଏହୁ ପଦରଚନ । ପଦ୍ମନାଭ ପଦଯୁଗଳେ ଲୀନ ।।
ଶୁଣି ଧରଣୀଧର ହରଷ । ଦ୍ରାହି କରିବେ କମଳାବିଳାସ ।।

ଗଦ୍ୟ – ଶ୍ରୀ ଜୟଦେବ କବିରାଜଙ୍କଦ୍ୱାରା ଭଣିତ ପଦେ ପଦେ ଶ୍ରୀକୃଷ୍ଣଙ୍କ ଚିତ୍ତବିନୋଦନକାରୀ ଏବଂ ମନୋରମ ରତିରସ ତଥା ରତିଭାବ ବିନୋଦଜନକ ଗୀତଗୋବିନ୍ଦର ପଦାବଳୀ ରସିକଜନମାନଙ୍କ ହୃଦୟରେ ଆନନ୍ଦ ବର୍ଦ୍ଧନ କରୁ ।

ପ୍ରତ୍ୟୂହଃ ପୁଲକାଙ୍କୁରେଣ ନିବିଡ଼ାଶ୍ଳେଷେ ନିମେଷେଣ ଚ
କ୍ରୀଡ଼ାକୂତବିଲୋକିତେଽଧରସୁଧାପାନେ କଥାନର୍ମଭିଃ ।
ଆନନ୍ଦାଧିଗମେନ ମନ୍ମଥକଳାଯୁଦ୍ଧେଽପି ଯସ୍ମିନ୍ନଭୂ-
ଦୁଦ୍‌ଭୂତଃ ସ ତୟୋର୍ବଭୂବ ସୁରତାରମ୍ଭଃ ପ୍ରିୟଂ ଭାବୁକଃ । ୨ ।

ପଦ୍ୟ– ଶୁଣ ସାଧୁଜନେ ଏହୁ ଅମୀୟ ବଚନ ।
ରାଧାକୃଷ୍ଣ କଳେବର ହୋଏ ସଂଯମନ ।।
ରତିକେଳି କଉତୁକେ ମାତି ବେନିଜନ ।
ବୁଡ଼ିଲେ ରସସାଗରେ ହୋଇ ମୋଦମଗ୍ନ ।।
ରସଭରେ ରମଣରମଣୀ ଘନଘନ ।
ନିବିଡ଼ାଲିଙ୍ଗନେ କଲେ ସୁଧାଧର ପାନ ।।
ପ୍ରେମରସେ ରସଭରେ ବୁଡ଼ି ବେନିଜନ ।
ମଦନ ବିକାରେ ବାଣୀ ନୁହଇ ସ୍ଫୁରଣ ।।
ପରସ୍ପର ଚାହିଁ ଦୁହେଁ ସତୃଷ୍ଣ ନୟନେ ।
ନିମେଷପାତ ଅସହ୍ୟ ହୋଇଲା ସେ କ୍ଷଣେ ।।
ଲୀଳାୟେ ଚଳନ୍ତେ ଚକ୍ଷୁ ପିଛଡ଼ା ନ ଚଳି ।
ପ୍ରେମରସେ ଘନ କୁଚ ଉରେ ଭିଡ଼ି ବାଳୀ ।।
ଅତି ମତି ଭୋଳା ହୋଇ ସେ ପୁଂସ ତରୁଣୀ ।
ବଦନ ସରୋଜ ଚୁମ୍ବୁଥା'ନ୍ତି ପୁଣ ପୁଣି ।।

ମନମଥ କଳା କ୍ରୀଡ଼ାରେ କୁଶଳ ବେନି ।
ସୁରତ ଇଚ୍ଛନ୍ତି ପ୍ରେମେ ସେ କାନ୍ତ କାମିନୀ ।।

ଗଦ୍ୟ – ଶ୍ରୀରାଧାକୃଷ୍ଣଙ୍କ ଚିରଅଭିଳଷିତ ସେହି ରତିକେଳି କୌତୁକ ଆରମ୍ଭ ହୋଇ ଉଭୟଙ୍କ ଚିତ୍ତକୁ ପ୍ରଫୁଲ୍ଲିତ କରାଇଲା । ସେ ସମୟରେ ନିବିଡ଼ ଆଲିଙ୍ଗନର ବାଧକରୂପେ ଶରୀର ରୋମାଞ୍ଚିତ ହୋଇଉଠିଲା । ରତିକେଳି ସମୟରେ ପରସ୍ପରକୁ ସତୃଷ୍ଣ ଦୃଷ୍ଟିରେ ଚାହିଁରହୁଥିବା ସମୟରେ ଚକ୍ଷୁର ନିମେଷପାତ ମଧ୍ୟ ବାଧାଜନକ ହେଲା । ଅଧରରୁ ସୁଧାପାନ କରୁଥିବା ସମୟରେ ମଧୁର ଆଳାପ ନିତାନ୍ତ ଅସହ୍ୟ ହୋଇଉଠିଲା । ଅର୍ଥାତ୍ ଉଭୟଙ୍କ ପକ୍ଷରେ ରତିକେଳି ଏତେ ଆନନ୍ଦଦାୟକ ହୋଇଥିଲା ଯେ, ସାମାନ୍ୟ କ୍ରିୟାକଳାପ ମଧ୍ୟ ବାଧା ସୃଷ୍ଟି କଲାପରି ଜଣାପଡୁଥିଲା ।

ଦୋର୍ଭ୍ୟାଂ ସଂଯମିତଃ ପୟୋଧରଭରେଣାପୀଡ଼ିତଃ ପାଣିଜୈ –
ରାବିଦ୍ଧୋ ଦଶନୈଃ କ୍ଷତାଧରପୁଟଃ ଶ୍ରୋଣୀତଟେନାହତଃ ।
ହସ୍ତେନାନମିତଃ କଚେଽଧରମଧୁସ୍ୟନ୍ଦେନ ସଂମୋହିତଃ ,
କାନ୍ତଃ କାମପି ତୃପ୍ତିମାପ ତଦହୋ କାମସ୍ୟ ବାମା ଗତିଃ ।।୩।

ପଦ୍ୟ– ବେନି ହୃଦୟ ଜଡ଼ିତ ଏକତନୁ ମତ ।
ରସ ସାଗରେ ମଜ୍ଜିଲା ଦୁହିଙ୍କର ଚିତ୍ତ ।।
ଉଲ୍ଲୋଳ ହୋଇଣ କାମ ତଟିନୀ ବଢ଼ିଲା ।
ଲଜ୍ଜା ବିବେକ ସଙ୍ଗତେ ବସନ ହିଁ ଗଲା ।।
ଭୁଜ-ବଲ୍ଲରୀ ବନ୍ଧନେ ବାନ୍ଧିଲା ତରୁଣୀ ।
ପ୍ରେମରସେ ରସି ପୀଡ଼ାଦିଏ ପୁଣ ପୁଣି ।।
ଘନକୁଚ଼ଭାରେ ପୀଡେ ତୀକ୍ଷ୍ଣନଖ କ୍ଷତେ ।
ବିମ୍ବାଧର ତଟ ପୁଟେ ଦଶନର ଘାତେ ।।
କେଶ କରଷଣେ ବାଳା ଦିଅଇ ଚୁମ୍ବନ ।
ଅଧର ପୀୟୂଷ ପାନେ ସଂମୋହିତ ମନ ।।
ଗାଢ଼େ ଘନଜଘନେ ପୀଡ଼ଇ ଘନ ଘନ ।
ମଦନମତ୍ତରେ ନାନା କୁତୂହଳମାନ ।।
ମକରଧ୍ୱଜ ଶର ଏସନ ବକ୍ରଗତି ।
ଏତେ ପ୍ରକାର ଶାସ୍ତିକି ନୋହିଲା ବିମତି ।।

ଗଦ୍ୟ – ଶ୍ରୀରାଧାଙ୍କ ଭୁଜବନ୍ଧନରେ ବନ୍ଦୀ, ଘନକୁଚ଼ ଭାରରେ ପୀଡ଼ିତ, ନଖ ଘାତରେ ଜର୍ଜରିତ, ଦଶନଦ୍ୱାରା ଅଧର ଓଷ୍ଠରେ କ୍ଷତବିକ୍ଷତ, ନିତମ୍ବଦ୍ୱାରା ତାଡ଼ିତ, କରପଲ୍ଲବଦ୍ୱାରା କେଶ ଅବନମିତ ତଥା ଅଧରମଧୁପାନରେ ସଂମୋହିତ ହେଲେ ମଧ୍ୟ ପ୍ରଣୟୀ ଶ୍ରୀକୃଷ୍ଣ

ଅନିର୍ବଚ଼ନୀୟ ତୃପ୍ତି ଲାଭକଲେ । ଆଃ, କାମର ଗତି ହିଁ ଅତି ବିଚିତ୍ର ! ନୋହିଲେ ପୀଡ଼ାଜନକ ପରିସ୍ଥିତିରେ ତୃପ୍ତି ମିଳନ୍ତା କିପରି ?

**ମାରାଙ୍କେ ରତିକେଳିସଙ୍କୁଳରଣାରମ୍ଭେ ତୟା ସାହସ-**
**ପ୍ରାୟଂ କାନ୍ତଜୟାୟ କିଂଚିଦୁପରି ପ୍ରାରମ୍ଭି ଯତ୍ ସମ୍ଭ୍ରମାଦ୍ ।।**
**ନିଷ୍ପନ୍ଦା ଜଘନସ୍ଥଳୀ ଶିଥିଳତା ଦୋର୍ବଲ୍ଲିରୁତ୍କମ୍ପିତଂ**
**ବକ୍ଷୋ ମୀଳିତମକ୍ଷି ପୌରୁଷରସଃ ସ୍ତ୍ରୀଣାଂ କୁତଃ ସିଧ୍ୟତି । । ୪ ।**

ପଦ୍ୟ— ରତିକ୍ରୀଡ଼ା ସମର ଦୃଢ଼େ ବିସ୍ତାର କରି । କାନ୍ତକୁ ଜିଣିଲା ପ୍ରାୟ ଉତ୍ସୁକ ସୁନ୍ଦରୀ ।।
ବିବିଧ ପ୍ରକାରେ ରତି-ବିପରୀତ ଆଦି । ରତିଶାସ୍ତ୍ର ଯେହ୍ନେ ବିହି ଅଛନ୍ତି ସମ୍ପାଦି ।।
ଶ୍ରମଭର ହୋଇ ଅତି ଖଞ୍ଜନ-ନୟନୀ । କମ୍ପେ ଉର ଘନ ଘନ ବାହୁଲତା ବେନି ।।
ନିଷ୍ପ୍ରାଣ ହୋଇଣ ସେହୁ ରମଣୀ-ରତନ । ମୁକୁନ୍ଦ ହୃଦୟଦେଶେ ରତିଖେଦେ କ୍ଷୀଣ ।।
ପୁରୁଷାୟିତ କରଣେ ସମ କାହୁଁ ନାରୀ । ତେହ୍ନେ ରଣେ ଶିଥିଳ ହୋଇଲା ବିମ୍ବାଧରୀ ।।

ଗଦ୍ୟ — କାମପୀଡ଼ାରେ କବଳିତ ହୋଇ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ବକ୍ଷ ଉପରେ ରହି ବିପରୀତ ରତିକେଳିରେ ନାନାବିଧ ଆଲିଙ୍ଗନ, ଚୁମ୍ବନ, ଜଘନତାଡ଼ନ, ପୟୋଧରପୀଡ଼ନ, ନଖଦନ୍ତକ୍ଷତ ଆଦି ଅତ୍ୟନ୍ତ ସାହସ ସହକାରେ, ରତିରଣଜୟ ଇଚ୍ଛାରେ ପ୍ରିୟତମଙ୍କୁ ନିରସ୍ତ କରିବା ପାଇଁ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ, ତାହା କିଛି ସମୟ ପରେ ଶାନ୍ତ ହୋଇଯାଇଥିଲା । ତେଣୁ ତାଙ୍କର ଜଘନଦେଶ ନିଶ୍ଚେଷ୍ଟ, ବାହୁଯୁଗଳ ଶିଥିଳିତ, ନୟନ ନିମୀଳିତ, ବକ୍ଷଦେଶ କମ୍ପିତ ତଥା ସର୍ବାଙ୍ଗ ସ୍ତବ୍ଧ ହୋଇଯାଇଥିଲା । ପ୍ରକୃତରେ ସ୍ତ୍ରୀମାନଙ୍କ ପକ୍ଷରେ ପୁରୁଷାୟିତ ଭାବ ସମ୍ଭବ ହେବ କିପରି ? କାରଣ ନାରୀ କୋମଳାଙ୍ଗୀ, ତେଣୁ ପୁରୁଷଙ୍କ ପରି ଆଚ଼ରଣରେ ସେ କିପରି ସଫଳତା ଅର୍ଜନ କରିବାର ସମର୍ଥ ହେବେ ?

**ତସ୍ୟାଃ ପାଟଳପାଣିକାଙ୍କିତମୁରୋ ନିଦ୍ରାକଷାୟେ ଦୃଶୌ**
**ନିର୍ଦ୍ଧୌତୋଽଧରଶୋଣିମା ବିଲୁଳିତାଃ ସ୍ରସ୍ତସ୍ରଜୋ ମୂର୍ଦ୍ଧଜାଃ ।**
**କାଞ୍ଚିଦାମ ଦରଶ୍ଲଥାଞ୍ଚଳମିତି ପ୍ରାତର୍ନିଖାତୈ ର୍ଦୃଶୋ-**
**ରେଭିଃ କାମଶରୈସ୍ତଦଦ୍ଭୁତମଭୂଦ୍ ପତ୍ୟୁର୍ମନଃ କୀଳିତମ୍ । ୫ ।**

ପଦ୍ୟ — ରସିକ ସୁଜାଣ ସେ ନାଗରବର ହରି ।
ନିଶି ଅବଶେଷ ହେଲା ରସକେଳି କରି ।।
ନୀରସବଦନା ରାଧା ଦେଖି ଯଦୁସାଇଁ ।
ସ୍ୱେଦ ନିବାରଣେ ମନ୍ଦ ପବନ ସେ ଦେଇ ।।
ସ୍ଥକିତ ହୋଇଣ ସେ ଅବଳା ଶିରୋମଣି ।
କଟିତଟେ ବସନ ସେ ଆଚ୍ଛାଦିଲା ଆଣି ।।

ଚାହିଁଲ ଆପଣା ତନୁ ଇନ୍ଦୀବରମୁଖୀ ।
ବିରସ ହୋଇଲା ଅଙ୍ଗେ ଚିହ୍ନମାନ ଦେଖି ॥
ବୋଲଇ ମଦନଶର ଦୁଃସହ ଅଟଇ ।
କ୍ଷଣିକ ମୋହରେ କିଛି ନ ଜାଣଇ କେହି ॥
ନଖକ୍ଷତ ଶୋଣିତ ହୃଦୟରେ ଯୁବତୀ ।
ଯେମନ୍ତେ ପାଟଳ କୁସୁମରେ ଅତି ଦ୍ୟୁତି ॥
ଉନ୍ନିଦ୍ରେ କଷାୟ ନୀଳେନ୍ଦୀବର ଲୋଚନ ।
ଅଧର ନୀରସ ଦିଶେ ବିରଙ୍ଗ ବିଦ୍ରୁମ ॥
ଫିଟି ସୁମନସ ସ୍ରଜ କୁନ୍ତଳୁ ପଡ଼ିଲା ।
କଟିମେଖଳା ବସନ ଶିଥିଳ ହୋଇଲା ॥

ଗଦ୍ୟ – ପ୍ରାତଃ କାଳରେ ପ୍ରିୟା ଶ୍ରୀରାଧାଙ୍କଠାରେ କାମଦେବଙ୍କର ପଞ୍ଚଶର ସଦୃଶ ପାଞ୍ଚଗୋଟି ଚିହ୍ନ ଅବାଲୋକନ କରି, ଶ୍ରୀକୃଷ୍ଣଙ୍କ ମନ ପୁଣି କାମବାଣରେ ନିପୀଡ଼ିତ ହେବାକୁ ଲାଗିଲା । ଶ୍ରୀକୃଷ୍ଣ ପ୍ରାତଃକାଳରେ ଲକ୍ଷ୍ୟ କରି ଦେଖିଲେ, ଶ୍ରୀରାଧାଙ୍କ ବକ୍ଷଦେଶରେ ପାଟଳପୁଷ୍ପ ସଦୃଶ ନଖକ୍ଷତଚିହ୍ନ ରକ୍ତିମ ଆଭା ପ୍ରକଟ କରି ଶୋଭାପାଉଛି । ରାତ୍ରି ଅନିଦ୍ରାରେ ବିତିଥିବାରୁ ଚକ୍ଷୁର ରଙ୍ଗ କମଳପୁଷ୍ପ ପରି ଈଷତ୍ ଅରୁଣାଭ ଦେଖାଯାଉଛି । ପିନ୍ଧିଥିବା ମାଳତୀ କୁସୁମମାଳା କେଶପାଶ ଓ କଣ୍ଠଦେଶରୁ ଖସି ଭୂମିରେ ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ପ୍ରଗାଢ଼ ଚୁମ୍ବନ ଫଳରେ ଅଧରପଲ୍ଲବରୁ ଲାଲିମା ଲିଭିଯାଇ ବନ୍ଧୁଲି ପୁଷ୍ପର ଆଭା ଧାରଣ କରିଛି । ଜଘନଦେଶରୁ ଚନ୍ଦ୍ରହାର ସହିତ ପିନ୍ଧିଲା ବସ୍ତ୍ର ଖସିଯାଇଥିବାରୁ କନକାଙ୍ଗୀର ଜଘନ ଶୋଭା ଯାଇଫୁଲର ଶୋଭା ଧାରଣକରିଛି । ପ୍ରିୟତମାଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ପଞ୍ଚଶର ସଦୃଶ କାମୋଦ୍ରେକ ଆଭା ପରିଦର୍ଶନ କରି ଶ୍ରୀକୃଷ୍ଣଙ୍କ ମନରେ ପୁଣି କାମଭାବ ଜାତହୋଇଥିଲା ।

**ଅଥ କାନ୍ତଂ ରତିଶ୍ରାନ୍ତଂ ପୁନର୍ମଣ୍ଡନବାଞ୍ଛୟା,**
**ନିଜଗାଦ ନିରାବାଧା ରାଧା ସ୍ୱାଧୀନଭର୍ତୃକା । ୬ ।** *

---

* ଏ ଶ୍ଲୋକ ପରିବର୍ତ୍ତେ ରସିକପ୍ରିୟା ଓ ରସମଞ୍ଜରୀ ଟୀକା ସମନ୍ୱିତ ଗୀତଗୋବିନ୍ଦରେ ଆଉ ଗୋଟିଏ ଶ୍ଲୋକ ଥିବାର ପରିଲକ୍ଷିତ ହୁଏ –

**ଅଥ ସହସା ସୁପ୍ରୀତା ସ୍ମରଣାନ୍ତେ ତା ନିତାନ୍ତଖିନ୍ନାଙ୍ଗୀ**
**ରାଧା ଜଗାଦ ସାଦରମିଦମାନନ୍ଦେନ ଗୋବିନ୍ଦମ୍**

ଏହା ବ୍ୟତୀତ ଏହି ଶ୍ଲୋକ ପୂର୍ବରୁ ''ବ୍ୟାକୋଶ କେଶପାଶ...'' ଏବଂ ''ଈଷନ୍ମୀଳିତ ଦୃଷ୍ଟି...'' ଶୀର୍ଷକ ଦୁଇଟି ଶ୍ଲୋକ ଅଧିକ ରହିଛି । ଏ ଶ୍ଲୋକ ଦୁଇଟି ଉତ୍କଳୀୟ ଟୀକା 'ସର୍ବାଙ୍ଗସୁନ୍ଦରୀ' ଓ 'ଶ୍ରୁତିରଞ୍ଜିନୀ' ସମନ୍ୱିତ ଗୀତଗୋବିନ୍ଦରେ ପରିଲକ୍ଷିତ ହୁଏ ନାହିଁ ।

ପଦ୍ୟ – ଏ ରୂପେ ହୃଦୟେ ଅତି ପରମ ସାନନ୍ଦ ।
ବିବିଧ ପ୍ରକାରେ କ୍ରୀଡ଼ା ସାରିଲେ ଗୋବିନ୍ଦ ।।
ପ୍ରିୟାକୁ ବସାଇ ପାଶେ ଅତ୍ୟନ୍ତ ହରଷ ।
ସୁବେଶ ହେବା ଆଶାରେ ବଳାଇ ମାନସ ।।
ସ୍ୱାଧୀନଭର୍ତ୍ତୃକା ରାଧା ବୋଲଇ ବଚ଼ନ ।
ସରସ ମଧୁର କାନ୍ତେ ନୁଆଁଇ ବଦନ ।।

ଗଦ୍ୟ – ସ୍ୱାଧୀନଭର୍ତ୍ତୃକା ଶ୍ରୀରାଧା ପୁଣି ପୂର୍ବପରି ବେଶଭୂଷଣରେ ମଣ୍ଡିତ ହେବା ପାଇଁ ଇଚ୍ଛା କରି, ରତିକ୍ଲାନ୍ତ କାନ୍ତ ଶ୍ରୀକୃଷ୍ଣଙ୍କୁ ନିର୍ବିକାର ଚିତ୍ତରେ କହିଲା ।

*[ ରାମକିରୀ ରାଗେଣ ଗୀୟତେ ( ଯତିତାଳାଭ୍ୟାଂ ଗୀୟତେ ) । (ଗୀତ-୨) ]*

**(ଶ୍ରୁତିରଞ୍ଜନୀ ଟୀକାରେ ଏ ଗୀତଟିକୁ 'ମଙ୍ଗଳ କୌଶିକ'– ରାଗରେ ଗାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଛି ।)**

**କୁରୁ ଯଦୁନନ୍ଦନ ! ଚନ୍ଦନଶିଶିରତରେଣ କରେଣ ପୟୋଧରେ**
**ମୃଗମଦପତ୍ରକମତ୍ର ମନୋଭବମଙ୍ଗଳକଳଶସହୋଦରେ ।**
**ନିଜଗାଦ ସା ଯଦୁନନ୍ଦନେ କ୍ରୀଡ଼ତି ହୃଦୟାନନ୍ଦନେ । । (କ) । ଧ୍ରୁବମ୍ ।**

ପଦ୍ୟ– ବୋଲଇ ସୁନ୍ଦରୀ ଶୁଣ ହେ ଯଦୁନନ୍ଦନ !
ତୁମ୍ଭ କରଯୁଗ ଯେହ୍ନେ ଶୀତଳ ଚନ୍ଦନ ।।
ମଙ୍ଗଳ କଳଶ ସମ ମୋ' ସ୍ତନ ଯୁଗରେ ।
ପତ୍ରାବଳୀ ରଚିଦିଅ ଗୋଳି କସ୍ତୂରୀରେ ।।
ମୃଗମଦ କସ୍ତୂରୀ ଘେନିଣ ଯଦୁନାଥ !
ଉରଜରେ ଲେପନ ତୁ କରସି ବିଚିତ୍ର ।।
ମନମଥ ସଖା ମୋର ଯଉବନ ବେନି ।
କ୍ରୀଡ଼ା ଆରମ୍ଭେ ମଙ୍ଗଳ କଳଶ କି ଜାଣି ।।
ତବ କରଜରେ ଏହୁ ଘାତ ପାଇ କରି ।
ପୀଡ଼ା ପାଉଅଛି ଶାନ୍ତ କର ହେ ମୁରାରି ।।

ଗଦ୍ୟ – ଚିତ୍ତକୁ ପ୍ରଫୁଲ୍ଲିତ କରୁଥିବା ଯଦୁନନ୍ଦନ ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ା ଶେଷକରି ବିଶ୍ରାମ କରୁଥିବା ସମୟରେ ଶ୍ରୀରାଧା ଉଲ୍ଲସିତା ହୋଇ କହିଲେ – ହେ ଯଦୁନନ୍ଦନ ଶ୍ରୀକୃଷ୍ଣ ! ଚନ୍ଦନ ପରି ଅତ୍ୟନ୍ତ ଶୀତଳ ତୁମ କରରେ, କାମଦେବଙ୍କର ମଙ୍ଗଳ କଳଶ ସଦୃଶ ମୋର ସ୍ତନମଣ୍ଡଳରେ କସ୍ତୂରୀରେ ପତ୍ରାବଳୀ ରଚ଼ନା କରିଦିଅ ।

**ଅଳିକୁଳଗଞ୍ଜନମଞ୍ଜନକଂ ରତିନାୟକସାୟକମୋଚ଼ନେ**
**ତ୍ୱଦଧରଚୁମ୍ବନଲମ୍ବିତକଜ୍ଜଳମୁଜ୍ଜ୍ୱଳୟ ପ୍ରିୟଲୋଚ଼ନେ । (ଖ)**

ପଦ୍ୟ — ଭ୍ରମରକୁଳକୁ ଗଞ୍ଜେ ଦେଖ ଏ ଅଞ୍ଜନ ।
ତୋହର ଚୁମ୍ବନେ ହୋଇ ଅଛଇ ଏ କ୍ଷୀଣ ॥
ଯେବଣ ନୟନ ମନମଥରାୟ ଶର । ଛାଡ଼ିଛି କାଳିମା ତହୁଁ ଉଜ୍ଜ୍ୱଳ ତା' କର ॥

ଗଦ୍ୟ— ହେ ଯଦୁନନ୍ଦନ ! ମଦନଶର ବିମୋଚ଼ନରେ ସହାୟକ ମୋ' ଲୋଚ଼ନଯୁଗଳରୁ ତୁମ ଚୁମ୍ବନ ଫଳରେ କଜ୍ଜଳ ଲିଭିଯାଇଛି । ତୁମେ ନିଜ ହାତରେ ମୋ' ନୟନଯୁଗଳରେ ଭ୍ରମରସମୂହର କାନ୍ତିକୁ ଗଞ୍ଜନ କରୁଥିବା କଜ୍ଜଳ ଘେନାଇଦେଇ ତାହାକୁ ଦେଦୀପ୍ୟମାନ କରିଦିଅ ।

**ନୟନକୁରଙ୍ଗତରଙ୍ଗବିକାଶନିରାସକରେ ଶ୍ରୁତିମଣ୍ଡଳେ**
**ମନସିଜପାଶବିଳାସଧରେ ଶୁଭବେଶ ନିବେଶୟ କୁଣ୍ଡଳେ । (ଗ)**

ପଦ୍ୟ — ତରଙ୍ଗ ଚଞ୍ଚଳ ବାଳକୁରଙ୍ଗୀର ପ୍ରାୟେ ।
ବିକାଶ ହୋଇ ଖେଳେ ଶ୍ରୁତିମଣ୍ଡଳ ଯାଏ ॥
ଏ ମୋହର ଶ୍ରବଣ ରୁଚିର ଶୁଭ ବେଶ ।
ମନସିଜ ଜଗତ ମୋହିତ କି ଏ ପାଶ ॥
ବିବିଧ ରତ୍ନଜଟିତ ଘଟିତ କୁଣ୍ଡଳ ।
ରଚ ମୋ' ଶ୍ରୁତିରେ ଶୋହୁ ଏ ଗଣ୍ଡମଣ୍ଡଳ ॥
ମଣିଗଣ ଜ୍ୟୋତି ସେହୁ କରନ୍ତୁ ପ୍ରକାଶ ।
ତିମିର କୁଳ ଗଞ୍ଜନ ଦୋଳନ୍ତେ ଆଭାସ ॥

ଗଦ୍ୟ— ହେ ଯଦୁନନ୍ଦନ ! ନେତ୍ରରୂପୀ କୁରଙ୍ଗ ତରଙ୍ଗାୟିତ ବିକାଶକୁ ନିରୋଧ କରୁଥିବା ମୋର କର୍ଣ୍ଣଯୁଗଳରେ କାମଦେବଙ୍କ ପାଶ ସଦୃଶ କୁଣ୍ଡଳ ପିନ୍ଧାଇଦିଅ । ହେ ମଙ୍ଗଳବେଶଧାରୀ ପ୍ରିୟତମ ମୋର, ତୁମରି ସହିତ ସୁରତକ୍ରୀଡ଼ାରେ ମାତିଥିବାରୁ ମୋ' କର୍ଣ୍ଣରୁ କୁଣ୍ଡଳ ଖସିପଡ଼ିଛି । ତାହାକୁ ପୁଣି ମୋ' କର୍ଣ୍ଣରେ ପିନ୍ଧାଇଦିଅ ।

**ଭ୍ରମରଚ଼ୟଂ ରଚ଼ୟନ୍ତମୁପରି ରୁଚିରଂ ସୁଚିରଂ ମମ ସମ୍ମୁଖେ,**
**ଜିତକମଳେ ବିମଳେ ପରିକର୍ମ୍ମୟ ନର୍ମଜନକମଳକଂ ମୁଖେ । (ଘ)**

ପଦ୍ୟ — ବିକଶିତ ନିର୍ମଳ ଅରବିନ୍ଦର ଜ୍ୟୋତି । ନିନ୍ଦଇ ବଦନ ଅତି ଲାବଣ୍ୟ ସୁକାନ୍ତି ॥
ସୁରେଖ ଅଳକାବଳୀ କର ସୁଯତନ । କୁଟିଳତର କୁନ୍ତଳ ଅତି ମନୋରମ ॥
ଯେସନ ନବବିକଚ଼ ସରୋଜ ଉପରେ । ଭ୍ରମରପନ୍ତି ବସନ୍ତି ମଧୁପାନଭରେ ॥

ଗଦ୍ୟ — ହେ ଯଦୁନନ୍ଦନ ! ସୌନ୍ଦର୍ଯ୍ୟରେ କମଳକୁ ଜିଣିଥିବା ମୋର ଏହି ନିର୍ମଳ ବଦନମଣ୍ଡଳରେ, ଭ୍ରମରସମୂହର କୃଷ୍ଣକାନ୍ତି ସଦୃଶ ତଥା କାମୋଦ୍ଦୀପକ ଏହି ଚୂର୍ଣ୍ଣକୁନ୍ତଳ

ଆଲୁଳାୟିତ ଭାବରେ ବିଛାଡ଼ି ହୋଇପଡ଼ିଛି । ତୁମେ ସେହି ଅଳକାବଳୀକୁ ଯଥାସ୍ଥାନରେ ସଜାଇଦିଅ । ଅର୍ଥାତ୍ ସୁରତବ୍ୟାପାରରେ ଆଲୁଳାୟିତ ମୋର କେଶକଳାପକୁ ସଜାଇ ଠିକ୍ ଭାବରେ ଜୁଡ଼ା ସଜାଡ଼ିଦିଅ ।

**ମୃଗମଦରସବଳିତଂ ଲଳିତଂ କୁରୁ ତିଳକମଳିକରଜନୀକରେ ।**
**ବିହିତକଳଙ୍କକଳଂ କମଳାନନ ବିଶ୍ରମିତଶ୍ରମଶୀକରେ ।। (ଙ)**

**ପଦ୍ୟ –** କୁରଙ୍ଗବର କସ୍ତୂରୀ ଅତିଯତ୍ନ କରି । ଲଲାଟପଟେ ତିଳକ ଲେଖସି ମୁରାରି ।।
ଯେସନ ପୂର୍ଣ୍ଣଚନ୍ଦ୍ରରେ କଳଙ୍କ ଅଙ୍କିତ । ତେସନ ପ୍ରାୟ ଦିଶିବ ତିଳକ ସଙ୍ଗତ ।।
ଲପନ ପଙ୍କଜେ ଶ୍ରମ ସ୍ୱେଦ କଣାମାନ । ଶୁଖିଯାଆନ୍ତେ ଲଲାଟ ଦିଶଇ ଶୋଭନ ।।

**ଗଦ୍ୟ –** ହେ କମଳନୟନ ଯଦୁନନ୍ଦନ ! ଅର୍ଦ୍ଧଚନ୍ଦ୍ର ସଦୃଶ ମୋର ଲଲାଟପଟରୁ ସ୍ୱେଦବିନ୍ଦୁ ଶୁଖିଯାଇଛି । ତୁମେ ଏତିକିବେଳେ ମୃଗନାଭି କସ୍ତୂରୀ ଗୋଳାଇ, ଚନ୍ଦ୍ରମଣ୍ଡଳରେ କଳଙ୍କ ଶୋଭା ପାଇଲାପରି, ଭାଲପଟରେ ତିଳକ କରିଦିଅ ।

**ମମ ରୁଚିରେ ଚିକୁରେ କୁରୁ ମାନଦ ! ମନସିଜଧ୍ୱଜ ଚାମରେ,**
**ରତିଗଳିତେ ଲଳିତେ କୁସୁମାନି ଶିଖଣ୍ଡବିଖଣ୍ଡକଡ଼ାମରେ । (ଚ)**

**ପଦ୍ୟ –** ଏ ମୋହର ଅତି ନୀଳ ଗହଳ ଚିକୁର । କି ଏ ମନମଥ ରଥଧ୍ୱଜର ଚାମର ।।
ଫିଟି ଲୋଟୁଅଛି ଦେଖ ସୁରତିସମରେ । ସୁସଞ୍ଚେ ଗଭା ସଜାଡ଼ି ଦିଅ କବରୀରେ ।।
ବିବିଧ କୁସୁମ ଗଭାରେ ପାଇବ ଶୋଭା । ନିବିଡ଼ ଅନ୍ଧାରେ ଚନ୍ଦ୍ରକିରଣର ଆଭା ।।

**ଗଦ୍ୟ –** ହେ ମାନିନୀ-ମାନଭଞ୍ଜନକାରୀ ଯଦୁନନ୍ଦନ ! କନ୍ଦର୍ପର ଧ୍ୱଜ ତଥା ଚାମର ସଦୃଶ ମୋର କେଶପାଶର ଜୁଡ଼ା ସୁରତକାଳରେ ଫିଟି ପୃଷ୍ଠଦେଶରେ ଲୋଟୁଛି । ସେଥିରେ ନାନାବିଧ ପୁଷ୍ପ ଖଞ୍ଜାଯାଇଥିବାରୁ ତାହା ମୟୂରପୁଚ୍ଛଠାରୁ ଅଧିକ ଶୋଭାଶାଳୀ ହୋଇଥିଲା । ତୁମେ ମୋର ସେହି ସୁନ୍ଦର କେଶପାଶରେ ଜୁଡ଼ା ସଜାଡ଼ିଦେଇ ସେଥିରେ ସୁଗନ୍ଧକୁସୁମମାନ ଖଞ୍ଜିଦିଅ ।

**ସରସଘନେ ଜଘନେ ମମ ଶମ୍ବରଦାରଣବାରଣକନ୍ଦରେ,**
**ମଣିରସନାବସନାଭରଣାନି ଶୁଭାଶୟ ବାସୟ ସୁନ୍ଦରେ । (ଛ)**

**ପଦ୍ୟ –** ସରସ ବଳିତ ଘନ ସୁଜଘନ ମୋର । ଜିଣି ଶମ୍ବର ଅରି କରୀର କନ୍ଦର ।।
ନୀଳପଟନୀ ଅମ୍ବର ଅତ୍ୟନ୍ତ ରୁଚିର । ପରିଧାନ କରାଅ ହେ ଶ୍ରୀଯଦୁସୁନ୍ଦର ।।
ନାନା ରତ୍ନ ମଣିଗଣ ମେଖଳା କିଙ୍କିଣୀ । ଆଭରଣ କର କୃଷ୍ଣ କଟିତଟେ ଆଣି ।।

**ଗଦ୍ୟ–** ହେ ଶୋଭନଶୀଳ ! ଅତ୍ୟନ୍ତ ଆନନ୍ଦପ୍ରଦ ପୃଥୁଳ; ଶମ୍ବରାସୁରର ବିଦାରଣକାରୀ ହସ୍ତୀ ଅର୍ଥାତ୍ କାମ-କୁଞ୍ଜର କନ୍ଦର ସଦୃଶ ମୋର ସରସ ଜଘନଦେଶରୁ ମଣିଘଣ୍ଟିକାଯୁକ୍ତ ଚନ୍ଦ୍ରହାର (ରସନା) ଓ ବସନ ତଥା ଅନ୍ୟାନ୍ୟ ଭୂଷଣ ରତିବିଳାସ

ସମୟରେ ଖସିଯାଇଛି । ହେ ମୋର ମାନପ୍ରଦାନକାରୀ ଯଦୁନନ୍ଦନ ଶ୍ରୀକୃଷ୍ଣ ! ସେହି ଜଘନଦେଶରେ ଚନ୍ଦ୍ରହାର, ବସନ ଓ ଅଳଙ୍କାର ଆଦି ସଜାଡ଼ିଦିଅ ।

**ଶ୍ରୀଜୟଦେବବଚସି ରୁଚିରେ ହୃଦୟଂ ସଦୟଂ କୁରୁ ମଣ୍ଡନେ,**
**ହରିଚରଣସ୍ମରଣାମୃତକୃତକଳିକଳୁଷଜ୍ୱରଖଣ୍ଡନେ । (ଜ)**

ପଦ୍ୟ — ହଦୟ ହୃଦୟେ ଦୟା କର ତୁ ଈଶ୍ୱର ।
ଜୟଦେବ ବାଣୀ ଏହୁ ଅତ୍ୟନ୍ତ ମଧୁର ॥
ତବ ସ୍ମରଣ ବଚନ ଅମୃତରୁ ସାର । ହରିଚରଣ ସ୍ମରଣେ ହୁଅ ଭବୁ ପାର ॥
ପାପ ସମୂହ ସଂସାରେ ଜ୍ୱର ଏ ସଂଜାତ ।
ପଦ୍ମାବତୀକାନ୍ତାମୃତ ବଚନ ଯେ ହତ ॥

ଗଦ୍ୟ — ହେ ରସିକ ଭକ୍ତ ଜନତା ! କବିରାଜ ଶ୍ରୀଜୟଦେବଙ୍କ ରୁଚିର ପଦ୍ୟାବଳୀ, ଶ୍ରୀହରିଙ୍କ ଚରଣ ସ୍ମରଣ କରାଇ କଳିଯୁଗର ପାପତାପ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ଅମୃତତ୍ୱ ପ୍ରଦାନ କରୁଛି । ତୁମେମାନେ ସେହି ହରିଚରଣାମୃତ ପାନକରି ନିଜନିଜର ହୃଦୟକୁ ଦୟାପରିପୂର୍ଣ୍ଣ କର ।

**ରଚୟ କୁଚୟୋଃ ପତ୍ରଂ ଚିତ୍ରଂ କୁରୁଷ୍ୱ କପୋଳୟୋଃ**
**ଘଟୟ ଜଘନେ କାଞ୍ଚିମଞ୍ଚ ସ୍ରଜା କବରୀଭରମ୍ ।**
**କଳୟ ବଳୟଶ୍ରେଣୀ ପାଣୌ ପଦେ କୁରୁ ନୂପୁରା-**
**ବିତି ନିଗଦିତଃ ପ୍ରୀତଃ ପୀତାମ୍ବରୋଽପି ତଥାକରୋତ୍ । ୭ ।**

ପଦ୍ୟ — ଯେତେକ ପ୍ରକାରେ ସେହି କହିଲା ସୁନ୍ଦରୀ ।
ଅତି ଉଲ୍ଲାସେ ସୁବେଶ କରନ୍ତି ମୁରାରି ॥
କୁଚ ଯୁଗଳେ କୁରଙ୍ଗନାଭି ପତ୍ରାବଳୀ । ଗଣ୍ଡଦେଶେ ମକରୀ ରଚିଲେ ବନମାଳୀ ॥
ସାଜିଲେ ସୁକେଶବନ୍ଧେ କବରୀର ଶୋଭା । ଯେସନେ ଗଗନେ ନୀଳ ଜଳଧର ଆଭା ॥
ତହିଁ ଆଚ୍ଛାଦିତ ପୁଷ୍ପ ତାରକା ପଟଳ । ଫୁଟି କି ସେ ବିକାଶଇ ଗଗନ ମଣ୍ଡଳ ॥
ଖଞ୍ଜିଲେ ଭୁଜଯୁଗଳେ ମର୍କତ କଙ୍କଣ । ପାଦେ ନୂପୁର ସାଜିଲେ ଶ୍ରୀରଙ୍ଗାଚରଣ ॥
ଯେମନ୍ତ ବୋଇଲେ ରାଧା ନାଗରୀରତନ । ଅନୁରୂପେ ସାଜେ ମଣ୍ଡିଦେଲେ ଜନାର୍ଦ୍ଦନ ॥

ଗଦ୍ୟ — ହେ ପୀତାମ୍ବର ! ମୋ' ସ୍ତନମଣ୍ଡଳରେ ପତ୍ରାବଳୀ ରଚନା କର । ଗଣ୍ଡଦେଶରେ ଚିତ୍ର ଆଙ୍କିଦିଅ । ମୋ' ଜଘନଦେଶରେ ଚନ୍ଦ୍ରହାର ପିନ୍ଧାଇଦିଅ । ମୋ' ଜୁଡ଼ାରେ ଫୁଲମାଳ ମଣ୍ଡଣି କରି ସଜାଇଦିଅ । କରଯୁଗଳରେ ବଳୟ ଓ ପାଦରେ ନୂପୁର ଖଞ୍ଜିଦେଇ ମୋତେ ବେଶ କରିଦିଅ ।

ଶ୍ରୀରାଧାଙ୍କ ବଚନ ଶୁଣି ତାଙ୍କ କହିବା ଅନୁସାରେ ଅତ୍ୟନ୍ତ ପ୍ରମୁଦିତ ହୋଇ ପୀତାମ୍ବର ଶ୍ରୀକୃଷ୍ଣ ଯଥାସ୍ଥାନରେ ବେଶ ରଚନା କରି ପ୍ରାଣପ୍ରିୟାକୁ ପରିତୁଷ୍ଟ କରାଇଲେ ।

**ଯଦ୍ ଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଂ ଚ ଯଦ୍‌ବୈଷ୍ଣବଂ,**
**ଯଚ୍ଛୃଙ୍ଗାରବିବେକତତ୍ତ୍ୱରଚନା କାବ୍ୟେଷୁ ଲୀଳାୟିତମ୍ ।**
**ତତ୍ସର୍ବଂ ଜୟଦେବପଣ୍ଡିତକବେଃ କୃଷ୍ଣୈକତାନାତ୍ମନଃ,**
**ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ । (୮)**

ପଦ୍ୟ – ଶୁଣ ହେ ସୁଜନଜନେ ହୋଇଣ ହରଷ ।
ରାଧାମାଧବଙ୍କ ରସକେଳି ଏ' ପ୍ରକାଶ ।।
ହରିଭକ୍ତି ଭାବରେ ଅଛଇ ଯେବେ ଧ୍ୟାନ ।
ସଙ୍ଗୀତ ସ୍ୱରୂପ ଲୀଳା ଜାଣିବାକୁ ମନ ।।
ଶୃଙ୍ଗାରରସତତ୍ତ୍ୱରେ ପୂରିତ ଏ ଗ୍ରନ୍ଥ ।
ସକଳ କାବ୍ୟିକ ଗୁଣେ ଏ ପରିପୂରିତ ।।
ଶ୍ରୀକୃଷ୍ଣ ପାଦପଙ୍କଜେ ସଦା କରି ଧ୍ୟାନ ।
କରିଛନ୍ତି ଜୟଦେବ ଏ କାବ୍ୟ ରଚନ ।।
ସାନନ୍ଦେ ପିଅ ରସିକେ ଏ ଅମୃତ ଧାର ।
କଳିକଳୁଷ ବିନାଶି ଭବୁଁ ହେବ ପାର ।।

ଗଦ୍ୟ – ହେ ସୁଧୀବୃନ୍ଦ ! ଗୀତଗୋବିନ୍ଦରେ ଗାନ୍ଧର୍ବକଳା-କୌଶଳ ପରିପୂର୍ଣ୍ଣମାତ୍ରାରେ ରହିଛି ଅର୍ଥାତ୍ ନୃତ୍ୟ, ଗୀତ ଓ ବାଦ୍ୟ ସମାବେଶରେ ରାଗରାଗିଣୀର ସହିତ ଗୀତଗୋବିନ୍ଦର ପ୍ରବନ୍ଧ (ଗାଥା) ଓ ଶ୍ଳୋକଗୁଡ଼ିକ ଗାନ କରିବାର ବ୍ୟବସ୍ଥା ରହିଛି । ତଦ୍‌ବ୍ୟତୀତ ବିଷ୍ଣୁଙ୍କ ସମ୍ବନ୍ଧୀୟ ସକଳ ତତ୍ତ୍ୱ ଏଥିରେ ବର୍ଣ୍ଣିତ ହୋଇଛି । ଆହୁରି ମଧ ଶୃଙ୍ଗାରରସର ବିଭବ ଅନୁଭବ ଓ ସଞ୍ଚାରୀଭାବ ତଥା ବିପ୍ରଲମ୍ଭ ଓ ସମ୍ଭୋଗର ବିବେଚନା ଏଥିରେ ସୁଚାରୁରୂପେ ବର୍ଣ୍ଣନା କରାଯାଇଛି । କେବଳ ସେତିକି ନୁହେଁ, କାବ୍ୟରଚନାରେ ଯାବତୀୟ କବିପ୍ରସିଦ୍ଧି ତଥା କବିକର୍ମ ପ୍ରତି ଗୀତଗୋବିନ୍ଦରେ ଦୃଷ୍ଟି ଦିଆଯାଇଛି । ଅର୍ଥାତ୍ କାବ୍ୟିକଚାରୁତା-ରୀତି, ଗୁଣ ଓ ଅଳଙ୍କାର ଯୋଜନାରେ ଗୀତଗୋବିନ୍ଦକୁ ଖଣ୍ଡିଏ ଅନବଦ୍ୟ କାବ୍ୟ ପୁସ୍ତକରେ ପରିଣତ କରାଯାଇଛି ।

ହେ ସୁଧୀବୃନ୍ଦ ! କବିରାଜ ଜୟଦେବ ଶ୍ରୀକୃଷ୍ଣଙ୍କ ପ୍ରତି ଐକାନ୍ତିକ ଭକ୍ତିଭାବ ପ୍ରଦର୍ଶନ କରି, ରାଧାମାଧବଙ୍କ ଲୀଳାବର୍ଣ୍ଣନାରେ ଅତ୍ୟନ୍ତ ସଫଳତା ଲାଭକରିଛନ୍ତି । ତେଣୁ ଗୀତଗୋବିନ୍ଦ କାବ୍ୟରୁ, ଗାନ୍ଧର୍ବକଳା, ବୈଷ୍ଣବୀ ଲୀଳା, ଶୃଙ୍ଗାର-ରସଚାତୁରୀ, କାବ୍ୟିକ ଚିନ୍ତାଧାରା ତଥା ଶ୍ରୀକୃଷ୍ଣଙ୍କ ପ୍ରତି ଅନନ୍ୟ ଭକ୍ତି ଆଦି ସକଳ ବିଷୟ ଜାଣିବାରେ ସଫଳକାମ ହୁଅ ।

**ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ଭବତଃ ଶର୍କରେ କର୍କଶାସି,**
**ଦ୍ରାକ୍ଷେ ଦ୍ରକ୍ଷ୍ୟନ୍ତି କେ ତ୍ୱାମମୃତମୃତମସି କ୍ଷୀର ନୀରଂ ରସସ୍ତେ ।**

**ମାକନ୍ଦ କ୍ରନ୍ଦ କାନ୍ତାଧର ଧରଣୀତଳଂ ଗଚ୍ଛ ଯଚ୍ଛନ୍ତି ଯାବଦ୍,**
**ଭାବଂ ଶୃଙ୍ଗାରସାରସ୍ୱତମିହ ଜୟଦେବସ୍ୟ ବିଶ୍ୱଗ୍‌ବଚାଂସି । ୯ ।**

ପଦ୍ୟ — ହେ ମାଧ୍ୱୀକ ! କିମ୍ପାଇଁ ଭାବୁଛ ରାତ୍ରଦିନ ।
ନୋହିବ କେବେ ହେ ଗୀତଗୋବିନ୍ଦ ସମାନ ।।
ଶର୍କରେ ! ତୋ' ସ୍ୱାଦୁ ହେବ ତିକ୍ତ ଆସ୍ୱାଦନେ ।
ଯାବତ ପ୍ରସରେ ଗୀତଗୋବିନ୍ଦ ଗାୟନେ ।।
ନ ଚାହିଁବେ ଆଉ୍ ନେତ୍ରେ ଦ୍ରାକ୍ଷା ଫଳେ କେହି ।
ତୃପ୍ତ ହେବେ ଜନେ ସଦା ଏହୁ ଗାଥା ଗାଇ ।।
ଅମୃତ ! ତୋ' ନାମ ଭବେ ନ ରହିବ ଆଉ ।
କେ ସୁଧାପାନ ଇଚ୍ଛିବେ ଏହୁ ଗୀତ ଥାଉଁ ।।
କ୍ଷୀର ! ନୀର ପରି ଜନେ ହେବୁ ଅନାଦୃତ ।
ସୁଜନେ ପାନ କରିବେ ଏ ଗୀତ ଅମୃତ ।।
ହେ ରସାଳଫଳ ! ଆଉ ନକର କ୍ରନ୍ଦନ ।
ନ ଗଣିବେ ତୁମ୍ଭଙ୍କୁ କେ ଏ ଗୀତ ସମାନ ।।
କାମିନୀ ଅଧରାମୃତ ! ଯାଅ ରସାତଳେ ।
ଶ୍ରୀ ଗୀତଗୋବିନ୍ଦ ଗାଥା ଯାବତ ପ୍ରସରେ ।।
ରାଧା-ମାଧବଙ୍କ ଲୀଳା ଏ ଗୀତଗୋବିନ୍ଦ ।
ନିତି ଗାନ କରି ଜନେ ଲଭନ୍ତୁ ଆନନ୍ଦ ।।

ଗଦ୍ୟ — ହେ ମଧୁରସପୂର୍ଣ୍ଣ ମଦିରେ ! ତୁମେ ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟର ମାଦକତାକୁ ବଳିଯିବା ପାଇଁ ଆଦୌ ବୃଥା ଚିନ୍ତା କରନାହିଁ । ହେ ଶର୍କରେ ! ତୁମ ସ୍ୱାଦୁ ଗୀତଗୋବିନ୍ଦର ତୁଳନାରେ ନିତାନ୍ତ ତିକ୍ତ । ହେ ଦ୍ରାକ୍ଷେ ! ଅମୃତମୟ ଫଳ ରୂପେ ତୁମେ ଆଜିସୁଦ୍ଧା ଜନମାନସକୁ ତୃପ୍ତ କରିଆସିଛ; କିନ୍ତୁ ଏ ଗୀତଗୋବିନ୍ଦ ରୂପକ ଅମୃତରସ ପାନ କରିବା ପରେ ତୁମକୁ ଆଉ ପଚ଼ାରିବ କିଏ ? ହେ ଅମୃତ ! ତୁମେ ଆଉ ଅମୃତ ହୋଇ ନାହଁ, ତୁମର ମୃତ୍ୟୁ ହୋଇଗଲାଣି । ହେ ଦୁଗ୍ଧ ! ତୁମେ ଅମୃତମୟ ପାନୀୟ ରୂପେ ଜନସମାଜରେ ଆଦୃତ ହୋଇଛ, କିନ୍ତୁ ଗୀତଗୋବିନ୍ଦର ଅମୃତମୟ ରସ ତୁଳନାରେ ତୁମେ କେବଳ ଜଳରେ ପରିଣତ ହୋଇଗଲଣି । ହେ ପକ୍ୱରସଯୁକ୍ତ ସୁସ୍ୱାଦୁ ଫଳ ! ତୁମେମାନେ ଆଉ କ୍ରନ୍ଦନ କରନାହିଁ । କାନ୍ଦି କାନ୍ଦି ଥକିଗଲେ ମଧ ତୁମେମାନେ ଗୀତଗୋବିନ୍ଦର ସମକକ୍ଷ ହୋଇ ପାରିବ ନାହିଁ । ପ୍ରଣୟନିର ସୁଧାତୁଲ୍ୟ ଅଧର ! ଗୀତଗୋବିନ୍ଦରୁ ରସ ଗ୍ରହଣ ନକରି, ତୁମଆଡ଼କୁ କେହି ଆଉ ମୁଗ୍ଧ ଦୃଷ୍ଟିରେ ଦୃକ୍‌ପାତ କରିବ କାହିଁକି ? ତେଣୁ ତୁମର ସ୍ଥାନ ଆଉ ଅବନୀମଣ୍ଡଳରେ ନାହିଁ । ତୁମେ

ଆତ୍ମମର୍ଯ୍ୟାଦାର ସଂରକ୍ଷଣ ପାଇଁ ରସାତଳକୁ ଗମନକର । ଶ୍ରୀଜୟଦେବ କବିରାଜଙ୍କ ଶୃଙ୍ଗାର-ସାରସ୍ୱତ-ଭାବପୂର୍ଣ୍ଣ ଆଦରଣୀୟ କାବ୍ୟ ଯେତେଦିନ ଯାଏଁ ଜନମୁଖରେ ଗୀତହେଉଥିବ, ସେତେଦିନ ପର୍ଯ୍ୟନ୍ତ ଲୋକସମାଜରେ ସୁପରିଚିତ ସମସ୍ତ ମଧୁର ଆସ୍ୱାଦନ ନୀରସ ତଥା ବ୍ୟର୍ଥତାରେ ପରିଣତ ହେଉଥିବ ।

**ଶ୍ରୀଭୋଜଦେବପ୍ରଭବସ୍ୟ ରାଧାଦେବୀ ସୁତଶ୍ରୀଜୟଦେବକସ୍ୟ,**
**ପରାଶରାଦି-ପ୍ରିୟବର୍ଗକଣ୍ଠେ ଶ୍ରୀଗୀତଗୋବିନ୍ଦକବିତ୍ୱମସ୍ତୁ । ୧୦ ।** *

ପଦ୍ୟ – ଭୋଜଦେବ ରାଧାଦେବୀ ସୁତ ଜୟଦେବ ।
ଗୀତଗୋବିନ୍ଦ ଅଟଇ ଯାହାଙ୍କ ସମ୍ଭବ ।।
ସୁଲଳିତ କଣ୍ଠେ କାବ୍ୟଗୁଣେ ସୁସମ୍ପାଦି ।
ସେ ଗୀତ ଗାଇଲେ ମିତ୍ର ପରାଶର ଆଦି ।।
ତହୁଁ ପ୍ରସରିଲା ଜନେ ଶ୍ରୀଗୀତଗୋବିନ୍ଦ ।
ଯହିଁ କରିଛନ୍ତି ଲୀଳା ଶ୍ରୀ ପରମାନନ୍ଦ ।।
ଜଗତେ ପ୍ରସରୁ ଏହୁ ଗୀତକାବ୍ୟବନ୍ଧ ।
କଣ୍ଠେ ଗୁଣି ପ୍ରାଣୀଏ ତରନ୍ତୁ ଭବବନ୍ଧ ।।
ଧରଣୀଧର ସତତ ରାଧାକୃଷ୍ଣ ଧ୍ୟାନେ ।
ଏ ଗୀତ ରଚିଲା ଗାନ କର ସାଧୁଜନେ ।।

ଗଦ୍ୟ – ଶ୍ରୀ ଭୋଜଦେବଙ୍କ ଔରସ ଓ ରାଧାଦେବୀଙ୍କ ଗର୍ଭରୁ ଜାତ ଜୟଦେବଙ୍କ ପ୍ରଣୀତ ଶ୍ରୀଗୀତଗୋବିନ୍ଦ କାବ୍ୟଗ୍ରନ୍ଥ ପରାଶର ପ୍ରମୁଖ ବନ୍ଧୁବର୍ଗଙ୍କ କଣ୍ଠରେ ଗୀତକାବ୍ୟରୂପେ ପ୍ରଖ୍ୟାତି ଲାଭକରୁ ।

**ଇତିଶ୍ରୀ ଉତ୍କଳୀୟ କବି ଶ୍ରୀଜୟଦେବକୃତେ ଶ୍ରୀଗୀତଗୋବିନ୍ଦେ**
**ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶସର୍ଗଃ ସମାପ୍ତଃ ।।**

□□□

* ପ୍ରସ୍ତୁତ ଶ୍ଳୋକରେ ଥିବା ''ରାଧାଦେବୀ'' ପରିବର୍ତ୍ତେ 'ରାମାଦେବୀ' 'ବାମାଦେବୀ' ପାଠ ଅନ୍ୟତ୍ର ପରିଲକ୍ଷିତ ହୁଏ ।

# ଗାଥା (ଗୀତ) ଅନୁକ୍ରମଣିକା



ଗୀତଗୋବିନ୍ଦର ଗାଥାଗୁଡ଼ିକରେ ଯେଉଁ ରାଗ ରାଗିଣୀ ନିର୍ଦ୍ଦେଶ କରାଯାଇଛି, ତାହା ସମସ୍ତ ସଂସ୍କରଣରେ ସମାନ ନୁହେଁ । ବିଶେଷତଃ ଗୁଜ୍ଜରୀ ଓ ଗୁର୍ଜ୍ଜରୀର ପ୍ରୟୋଗ ପ୍ରାୟ ଦେଖାଯାଏ ।